# ବ୍ୟାସକବି ପରିକ୍ରମା



କଳିଙ୍ଗ ଗବେଷଣା ଏକାଡ଼େମୀ

ଗବେଷଣା ପତ୍ର - ୫

# ବ୍ୟାସକବି ପରିକ୍ରମା

(ଶିମଳାଠାରେ ଆୟୋଜିତ ଫକୀରମୋହନଙ୍କ
ଶ୍ରାଦ୍ଧ ବାର୍ଷିକ ସଭାରେ ପଠିତ ପ୍ରବନ୍ଧାବଳୀ'ର ସଂକଳନ)

ସମ୍ପାଦିକା
ବିନୀତା ସାହୁ

ସହ ସମ୍ପାଦିକା
ବିଶାଖା ସାହୁ




କଳିଙ୍ଗ ଗବେଷଣା ଏକାଡେମୀ
ଖ୍ରୀଷ୍ଟିୟାନ୍ ସାହି, ସୂତାହାଟ, କଟକ-୭୫୩ ୦୦୧
ଓଡ଼ିଶା

# ସୂଚନା

ଗତ ୨୦୦୪ ମସିହା ଜୁନ୍‌ମାସ ୧୪ ତାରିଖ ଦିନ ଗ୍ରୀଷ୍ମନିବାସ ତଥା ହିମାଚଳ ପ୍ରଦେଶର ରାଜଧାନୀ ଶିମଳାଠାରେ ଫକୀରମୋହନଙ୍କ ଛୟାଅଶୀ ତମ ଶ୍ରାଦ୍ଧ ଦିବସ ପାଳିତ ହୋଇଯାଇଛି । ଦିବା ଦଶ ଘଟିକା ସମୟରେ କୁଫ୍ରିଠାରେ ଆୟୋଜିତ ଏକ କ୍ଷୁଦ୍ର ସଭାରେ ମୁଖ୍ୟ ଅତିଥି ଭାବରେ ଯୋଗ ଦେଇଥିଲେ କଳିଙ୍ଗ ଗବେଷଣା ଏକାଡ଼େମୀର ଅନ୍ୟତମ ସଭ୍ୟ ଶ୍ରୀଯୁକ୍ତ ରଞ୍ଜନ କୁମାର ପଣ୍ଡା । ଏଥିରେ ସଭାପତିତ୍ୱ କରିଥିଲେ କଳିଙ୍ଗ ଗବେଷଣା ଏକାଡ଼େମୀର ସମ୍ପାଦକ ଶ୍ରୀ ସ୍ମରଣ କୁମାର ନାୟକ । ଶ୍ରୀଯୁକ୍ତ ପଣ୍ଡା, ଶ୍ରୀଯୁକ୍ତ ନାୟକଙ୍କ ବ୍ୟତୀତ କୁମାରୀ ବିନୀତା ସାହୁ ଓ କୁମାରୀ ବିଶାଖା ସାହୁ ଫକୀରମୋହନ ସାହିତ୍ୟର ବିଭିନ୍ନ ଦିଗ ଉପରେ ନିଜ ନିଜ ପ୍ରବନ୍ଧରେ ଆଲୋକପାତ କରିଥିଲେ । ଶେଷରେ ବିଶାଖା ସାହୁ ଧନ୍ୟବାଦ ଅର୍ପଣ କରିଥିଲେ । କୁଫ୍ରିର ଏକ ବର୍ଷଣ ମୁଖର ଶୀତଳ ଦିବସରେ ଏହି ସଭାଟି ବେଶ୍ ଉପଭୋଗ୍ୟ ହୋଇଥିଲା । ସନ୍ଧ୍ୟା ସମୟରେ ସୋଲନ ସ୍ଥିତ ହୋଟେଲ 'ଯୋଗେଶ୍'ରେ ଏକ ବନ୍ଧୁମିଳନର ଆୟୋଜନ କରାଯାଇଥିଲା । ଏହି ଅବସରରେ ଏହି 'ବ୍ୟାସକବି ପରିକ୍ରମା' ପୁସ୍ତକଟି ପ୍ରକାଶ ପାଇବ ବୋଲି ପୁସ୍ତକ ପ୍ରକାଶନ ବିଭାଗର ସମ୍ପାଦିକା ବିନୀତା ସାହୁ କହିଥିଲେ । ଓଡ଼ିଶା ବାହାରେ ଏହିପରି ଏକ ସଭାର ଆୟୋଜନ ବେଶ୍ ଆନନ୍ଦଦାୟକ ହୋଇଥିଲା । ଏହି ଆୟୋଜନର ଭାର ଗ୍ରହଣ କରିଥିଲେ ଏକାଡ଼େମୀର ବରିଷ୍ଠ ସଦସ୍ୟ ଶ୍ରୀମାନ ବିନୟ କୁମାର ସାହୁ ଏବଂ କୁମାରୀ ବନଜା ସାହୁ ।

*ବିନୀତା ସାହୁ*
*(ସମ୍ପାଦିକା-ଗବେଷଣା ପତ୍ର)*

କଟକ
ତା ୧୪-୦୪-୦୫ ରିଖ
(ମହାବିଷୁବ ସଂକ୍ରାନ୍ତି)

---

# ସୂଚୀପତ୍ର





# ଫକୀରମୋହନ ଅନୂଦିତ ରାମାୟଣ : ଏକ ଅଧ୍ୟୟନ

*– ସ୍ମରଣ କୁମାର ନାୟକ*

ବ୍ୟାସକବି ଫକୀରମୋହନ ସେନାପତିଙ୍କର ସମସ୍ତ କୃତି ମଧ୍ୟରେ 'ରାମାୟଣ ଅନୁବାଦ' ଏକ ଅନାଲୋଚିତ ଅଧ୍ୟାୟ । ବ୍ୟାସକବି ଫକୀରମୋହନ 'ରାମାୟଣ' ଅନୁବାଦ କରିଥିଲେ ଏକଥା ଅନେକେ ଜାଣି ନଥିବେ । 'ରାମାୟଣ' ଆଜି ସ୍ୱପ୍ନ ପାଲଟିଛି ଏହି ଜାତି ନିକଟରେ । ଅନେକ କଷ୍ଟ ସ୍ୱୀକାର କରି ଅନୁବାଦ କରାଯାଇଥିବା ଏହି ରାମାୟଣର ମୂଲ୍ୟ ନା ବୁଝିଥିଲେ ତାଙ୍କ ଦାର୍ଶନିକ ପୁତ୍ର ମୋହିନୀ ମୋହନ, ନା ବୁଝିପାରିଛି ଏ ଜାତି । ସାରାଜୀବନ କଷ୍ଟ ଯନ୍ତ୍ରଣା ସହି ଆସିଥିବା ଦୀର୍ଘକାୟ ମଣିଷଟିର ସମ୍ପୂର୍ଣ୍ଣ ସାରସ୍ୱତ ସାଧନା ଯଦି ଏକତ୍ରିତ ହୁଏ ଏବଂ ତାହାର ସଠିକ ଅନୁଶୀଳନ ହୁଏ ତେବେ ଏତେ ଦିନ ଯାଏ 'ଯୁଗ ପ୍ରବର୍ତ୍ତକ ସ୍ରଷ୍ଟା' ପଦରେ ଅଧିଷ୍ଠିତ ରାଧାନାଥ ଯେ ସେହି ପଦରୁ ଅକ୍ଳେଶରେ ପଦଚ୍ୟୁତ ହେବେ ସେକଥା କହିବା ବାହୁଲ୍ୟ ମାତ୍ର । ଏ ସମ୍ପର୍କରେ ଗୋଟିଏ ଘଟଣା ଉଲ୍ଲେଖ କରି ପୁନଃଆଲୋଚନାର ପଥରେ ପ୍ରିୟପାଠକମାନଙ୍କୁ କଢ଼ାଇନେବାର ପ୍ରୟାସ କରିବି ।

ଥରେ ଜଣେ ଅଧ୍ୟାପକ ରାଧାନାଥଙ୍କ ସପକ୍ଷରେ ଯୁକ୍ତିବାଢ଼ି ପ୍ରାୟ ଦେଢ଼ଘଣ୍ଟା ତାଙ୍କର ବକ୍ତବ୍ୟ ପରେ କହିଲେ ଆଜିକୁ ଏତେବର୍ଷ ବିତିଲାଣି 'ଚିଲିକା' ପରି ତ ଖଣ୍ଡିଏ କାବ୍ୟ ଲେଖାଯାଇପାରିଲାନାହିଁ । ତେଣୁ ସାମଗ୍ରିକ ରଚନା କାହିଁକି, ଏହି ଖଣ୍ଡିଏ କାବ୍ୟ ହିଁ ରାଧାନାଥଙ୍କୁ 'ଯୁଗସ୍ରଷ୍ଟା' ପଦରେ ଅଧିଷ୍ଠିତ କରାଇପାରିବ ।

ରାଧାନାଥଙ୍କ 'ଚିଲିକା' କାବ୍ୟପରି ଫକୀରମୋହନ ଖଣ୍ଡିଏ କାବ୍ୟ ଲେଖିପାରିଲେ ନାହିଁ ସତକଥା, ମାତ୍ର ଫକୀରମୋହନଙ୍କର ସାର୍ବକାଳୀକ ଉପନ୍ୟାସ 'ଛମାଣ ଆଠଗୁଣ୍ଠ' ପରି ଏକ ଉପନ୍ୟାସତ ରାଧାନାଥ ଲେଖିନାହାନ୍ତି । ତେଣୁ ରାଧାନାଥଙ୍କୁ 'ଯୁଗସ୍ରଷ୍ଟା' ବୋଲି କହିବା କେତେଦୂର ଯଥାର୍ଥତା ଅର୍ଜନ କରିପାରିଛି ତାହା ବିଜ୍ଞ ପାଠକଗଣ ବିଚାର କରନ୍ତୁ । ଏ ସମ୍ପର୍କରେ ସମସ୍ତ କଥା ଆମ୍ଭେ ଆମ୍ଭର ପରବର୍ତ୍ତୀ ପ୍ରବନ୍ଧରେ ଉଲ୍ଲେଖ କରିବୁ ।

ଏଠାରେ କହିବାର ଉଦ୍ଦେଶ୍ୟଯେ ଫକୀରମୋହନଙ୍କ ସମସ୍ତ ସାରସ୍ୱତ ସୃଷ୍ଟିର ସଠିକ ଅନୁଶୀଳନ ହୋଇ ପାରିନଥିବାରୁ ଆଜି ଫକୀରମୋହନ 'ଯୁଗସ୍ରଷ୍ଟା' ଆସନରେ ଆସୀନ ହୋଇନପାରି ବରଂ ବାକ୍‌ବିତଣ୍ଡା ମଧ୍ୟକୁ ଅଧିକ ଟାଣିହୋଇଯାଇଛନ୍ତି । ଯେପରିକି ଗୋଟିଏ ଅଧ୍ୟାୟ 'ରାମାୟଣର ସମ୍ପୂର୍ଣ୍ଣ ଅନୁବାଦ' । ଫକୀରମୋହନଙ୍କ ସମଗ୍ର ସାରସ୍ୱତ ରଚନାକୁ ମୁଖ୍ୟତଃ ଚାରିଭାଗରେ ବିଭକ୍ତ କରାଯାଇପାରେ –

(କ) ବଙ୍ଗଳା ଲେଖକ ଫକୀରମୋହନ, (ଖ) ଅନୁବାଦକ ଫକୀରମୋହନ, (ଗ) ଗଦ୍ୟସ୍ରଷ୍ଟା ଫକୀରମୋହନ ଓ (ଘ) କବି ତଥା କାବ୍ୟକାର ଫକୀରମୋହନ ।

## ଅନୁବାଦକ ଫକୀରମୋହନଙ୍କ ପୂର୍ବ ପରିଚୟ ଓ ଓଡ଼ିଆ ସାହିତ୍ୟରେ ପଦପାତ :

ଫକୀରମୋହନ ନିଜେ ସ୍ୱୀକାର କରିଛନ୍ତି ଯେ, ସେ 'ସୋମପ୍ରକାଶ' ନାମକ ବଙ୍ଗଳା ପତ୍ରିକାରେ ସେ ଲେଖାଲେଖି କରୁଥିଲେ । 'ଆତ୍ମଜୀବନୀ'ରେ ସେ ଲେଖିଛନ୍ତି –

"ସମୟ ସମୟରେ ବଙ୍ଗଳା ସୋମପ୍ରକାଶରେ କିଛି କିଛି ଲେଖୁଥିଲି । ମୋ ପ୍ରେରିତ ପତ୍ରଗୁଡ଼ିକ ସମ୍ପାଦକ ଛପାଇଦେବାରୁ ଲେଖିବାକୁ ସାହସ ଏବଂ ଉତ୍ସାହ ଜାତହେଲା ।" *(ଆତ୍ମଚରିତ-ଫ୍ରେଣ୍ଡସ୍ ପବ୍ଲିଶର୍ସ-୨୦୦୩-ପୃ. ୬୦)*

"ରାମାୟଣ ଲେଖିବା ସମୟରେ ମନ ମଧ୍ୟରେ ଭାବାନ୍ତର ଉପସ୍ଥିତ ହେଲା । ବଙ୍ଗଳା ଲେଖି ବଙ୍ଗଦେଶୀୟ କବି ଶ୍ରେଣୀ ମଧ୍ୟରେ ଗଣ୍ୟ ହୋଇପାରିବି ନାହିଁ, ବଙ୍ଗ ଭାଷାରେ ଅଭାବ ବା କଣ ଅଛି ? କେହି ପଢ଼ନ୍ତୁ ବା ନପଢ଼ନ୍ତୁ ଓଡ଼ିଆରେ ପୁସ୍ତକ ଲେଖିବି । ବର୍ତ୍ତମାନ କେହି ନ ପଢ଼ନ୍ତୁ, ଭବିଷ୍ୟତରେ କେହି ହେଲେ ପଢ଼ିବେ । ମୋ ମାତୃଭାଷାରେ ପୁସ୍ତକ ଖଣ୍ଡିଏ ବଢ଼ିବ ତ । ବଙ୍ଗଳାଲେଖା ଏକାବେଳେକେ ପରିତ୍ୟାଗ କରି ଓଡ଼ିଆରେ କବିତା ଲେଖିବାକୁ ଆରମ୍ଭ କଲି ।" *(ତତ୍ରୈବ - ପୃ. ୧୩୬-୩୭)*

ଅର୍ଥାତ୍, ଫକୀରମୋହନ 'ରାମାୟଣ' ଅନୁବାଦ କଲାବେଳକୁ ବଙ୍ଗଳା ଲେଖା ପରିତ୍ୟାଗ କରିସାରିଥିଲେ । ତେବେ କହିବାକୁ ଗଲେ ଆମ୍ଭକୁ ରାମାୟଣ ଅନୁବାଦର ସମୟ ନିରୂପଣ କରିବାକୁ ହେବ । ବାଲେଶ୍ୱର ସମ୍ବାଦବାହିକା ତା ୨୧/୮/୭୯, ୨୮/୮/୭୯, ୦୪/୦୯/୭୯ ଏବଂ ୧୧/୦୯/୭୯ରିଖରେ 'ରାମାୟଣ, ବାଳକାଣ୍ଡ' ଯନ୍ତ୍ରସ୍ଥ ଅଛି ବୋଲି ସମ୍ବାଦ ଦେଖିବାକୁ ମିଳେ । ସେହିପରି ସମ୍ବାଦବାହିକା ତା ୦୩/୦୬/୮୦, ୦୭/୦୬/୮୦ ଏବଂ ୧୦/୦୬/୮୦ରେ ବାଳକାଣ୍ଡର ମୁଦ୍ରିତ ଓ ପ୍ରକାଶନ ସମ୍ବାଦ ପ୍ରକାଶ ପାଇଅଛି । ଏସବୁ ସମ୍ବାଦକୁ ଆଖିଆଗରେ ରଖି ସ୍ପଷ୍ଟଭାବରେ କୁହାଯାଇପାରେ ଯେ ୧୮୭୯ ମସିହାର କୌଣସି ସମୟରେ ହିଁ ଫକୀରମୋହନ ବଙ୍ଗଳାଲେଖା ପରିତ୍ୟାଗ କରିଥିଲେ । ଆଉ ପଛବୁଲି କେବେ ବଙ୍ଗଳା ସାହିତ୍ୟ ପ୍ରତି ଫେରିବାକୁ ଇଚ୍ଛା ପ୍ରକାଶ କରିନାହାନ୍ତି ।

### ଅନୁବାଦକ ଫକୀରମୋହନ :

ଫକୀରମୋହନ ବଙ୍ଗଳା ରଚନା ପରିତ୍ୟାଗ କଲାପରେ ଅନୁବାଦ କାର୍ଯ୍ୟ ଆରମ୍ଭ କଲେ । ଏଠାରେ ତାଙ୍କର ଅନୁବାଦର ଏକ ପରିଚୟ ପ୍ରଦାନ କରାଯାଉଛି –

| | | | | | | |
|---|---|---|---|---|---|---|
| କ) | ରାମାୟଣ | – | ବାଳକାଣ୍ଡ ବା ଆଦିକାଣ୍ଡ | – | ୧୮୮୦ ମସିହା |
| ଖ) | ରାମାୟଣ | – | ଅଯୋଧ୍ୟାକାଣ୍ଡ | – | ୧୮୮୧ ମସିହା |
| ଗ) | ରାମାୟଣ | – | ଅରଣ୍ୟକାଣ୍ଡ | – | ୧୮୮୪ ମସିହା |
| ଘ) | ରାମାୟଣ | – | କିଷ୍କିନ୍ଧ୍ୟାକାଣ୍ଡ | – | ୧୮୮୫ ମସିହା |
| ଙ) | ରାମାୟଣ | – | ସୁନ୍ଦରାକାଣ୍ଡ | – | ୧୮୮୬ ମସିହା |
| ଚ) | ରାମାୟଣ | – | ଲଙ୍କାକାଣ୍ଡ | – | ୧୮୯୦ ମସିହା |
| ଛ) | ରାମାୟଣ | – | ଉତ୍ତରାକାଣ୍ଡ | – | ୧୮୯୫ ମସିହା |
| ଜ) | ମହାଭାରତ | – | ଆଦିପର୍ବ | – | ୧୮୮୬ ମସିହା |

| | | | | | | |
|---|---|---|---|---|---|---|
| ୯) | ମହାଭାରତ | – | ସଭାପର୍ବ | – | ୧୮୮୭ ମସିହା |
| ଞ) | ମହାଭାରତ | – | ବନପର୍ବ | – | ୧୯୦୪ ମସିହା |
| ଟ) | ମହାଭାରତ | – | ବିରାଟପର୍ବ | – | ୧୯୦୫ ମସିହା |
| ଠ) | ଶ୍ରୀମଦ୍ ଭଗବତ୍ ଗୀତା | | | – | ୧୮୮୭ ମସିହା |
| ଡ) | ଖିଳହରିବଂଶ | | | – | ୧୯୦୨ ମସିହା |
| ଢ) | ଉପନିଷଦ ସଂଗ୍ରହ | | | – | ୧୯୦୫ ମସିହା |
| ଣ) | ଛାନ୍ଦୋଗ୍ୟ ଉପନିଷଦ | | | – | ୧୯୧୬ ମସିହା ଇତ୍ୟାଦି |

*(ବ୍ୟାସକବି ଫକୀରମୋହନ -ନଟବର ସାମନ୍ତରାୟ - ୧୯୫୭ - ପୃ. ୧୭୮ ରୁ ୧୮୨)*

ଫକୀରମୋହନଙ୍କ ଦ୍ୱାରା ଅନୁଦିତ ଦ୍ରୋଣପର୍ବର କିୟଦଂଶ ଯାହାକି ପୂର୍ବରୁ ପ୍ରକାଶିତ ହୋଇ ନଥିଲା ତାହା 'ଫକୀରମୋହନ ପରିକ୍ରମା' ୧୯୫୫ରେ ପ୍ରକାଶିତ ପାଇଛି । ଏହି ଦୁର୍ଲ୍ଲଭ ଅଂଶଟିକୁ ଯୋଗାଇ ଦେଇଥିଲେ ଫକୀରମୋହନଙ୍କ ପୌତ୍ର ଶ୍ରୀ ମନ୍ମଥନାଥ ଚୌଧୁରୀ ।

*(ଫକୀରମୋହନ ପରିକ୍ରମା - ୧ମ ସଂସ୍କରଣ - ୧୯୫୫ - ପରିଶିଷ୍ଟ -ପୃ. ୩ ରୁ ୧୯)*

କବି ନନ୍ଦକିଶୋର ବଳ ତାଙ୍କର ପ୍ରବନ୍ଧରେ ଫକୀରମୋହନଙ୍କର ଆଉ କେତେକ ପୁସ୍ତକର ନାମ ପ୍ରଦାନ କରିଛନ୍ତି । ଏଗୁଡ଼ିକର ନାମକରଣ ଦେଖିଲେ ସେଗୁଡ଼ିକ ଅନୁବାଦ ପରି ମନେହୁଏ । ଯଥା – ନୀତିମନୋରମା, ମୋହମୁଦ୍‌ଗର, ବିଷ୍ଣୁପର୍ବ, ଭବିଷ୍ୟପର୍ବ, ସ୍କନ୍ଦପୁରାଣର ଉତ୍କଳଖଣ୍ଡ, ପାତଞ୍ଜଳି-ଦର୍ଶନ-ବ୍ୟାଖ୍ୟା ଇତ୍ୟାଦି ।

*(ନନ୍ଦକିଶୋର ଗ୍ରନ୍ଥାବଳୀ, ଫ୍ରେଣ୍ଡସ୍ ପବ୍ଲିଶର୍ସ - ୧୯୯୭ - ପୃ. ୯୩୧ - ଉତ୍କଳ କବି ଫକୀରମୋହନ)*

ଏହା ବ୍ୟତୀତ ତାଙ୍କର ମହାଭାରତର ଅନ୍ୟାନ୍ୟ ପର୍ବ ଅପ୍ରକାଶିତ ଏବଂ ସେସବୁ ପାଣ୍ଡୁଲିପି ଅବସ୍ଥାରେ ରହିଥିଲା । ସରଳା ଦେବୀ ଏ ପ୍ରସଙ୍ଗରେ ଯାହା ଲେଖିଛନ୍ତି, ଦେଖନ୍ତୁ –

୧ । "ରାମାୟଣ ବାଲେଶ୍ୱରର ରାଜା ବୈକୁଣ୍ଠନାଥ ଦେ ନେଇଥିଲେ ଦେଖିକରି ଫେରାଇ ଦେବେ ବୋଲି – ମାତ୍ର ସେ ଗ୍ରନ୍ଥ ତାଙ୍କ ଘରେ ରହିଥିଲା, ଫେରିନାହିଁ । ଉଈ ଖାଇଲା କି କିଏ ନଷ୍ଟ କଲା ସେ ଖବର ତାଙ୍କ ପୁଅ କିମ୍ବା ଆଉ କେହି ନେଲେ ନାହିଁ । ମହାଭାରତ ତାଙ୍କ ପୁଅଙ୍କ ଜିମାରେ ଥିଲା । କୀଟଦ୍ରଷ୍ଟ ଅବସ୍ଥାରେ ପ୍ରକାଣ୍ଡ ବହିର ପାଣ୍ଡୁଲିପି ରହିଅଛି । ଅଧେଲେଖା ନଷ୍ଟ ହୋଇଗଲାଣି ।"

*(ଫକୀରମୋହନ ପରିକ୍ରମା - ପୃ. ୩୫; ଜୀବନ କଥା)*

୨. "ସୌଭାଗ୍ୟକ୍ରମେ ବ୍ୟାସକବିଙ୍କ ଘରେ ତାଙ୍କର ହାତର ଲେଖା ଖିଳହରିବଂଶ ଓ ୧୯ ଖଣ୍ଡ ମହାଭାରତ, ତମପଡ଼ାରେ ଥିବା କାଳରେ ୧୮୯୨, ୧୮୯୪, ୧୯୦୧ ସାଲର ଅଛପା ପାଣ୍ଡୁଲିପିଗୁଡ଼ିକ ଦେଖି ମୁଁ ହତବାକ୍ ହୋଇପଡ଼ିଲି । ପାଣ୍ଡୁଲିପିଗୁଡ଼ିକ ଯଦି ଶୀଘ୍ର ଛପା ନଯାଏ ତେବେ ଉଈ ଖାଇ ଓ ପୁରୁଣା ହୋଇ ଝଡ଼ିଛିଡ଼ିପଡୁଥିବା କବିଙ୍କ ହାତଲେଖା ମହାଭାରତର ପର୍ବଗୁଡ଼ିକ କାଳଗର୍ଭରେ ବିଲୀନ ହୋଇଯିବ । କବି ଆମର ଓଡ଼ିଆ ଆଦି-କବି ସାରଳା ଦାସଙ୍କଠାରୁ କୌଣସି ଗୁଣରେ ସାନ ନୁହନ୍ତି ବରଂ ତାଙ୍କର ସମଶ୍ରେଣୀୟ କବିଥିଲେ । ତାଙ୍କର ଶତଶତ ପୃଷ୍ଠାର ବିଶାଳକାୟ ମହାଭାରତ ପାଣ୍ଡୁଲିପି ଦେଖିଲେ ଯେ କୌଣସି ଲୋକର ଚକ୍ଷୁ ସ୍ଥିର ହୋଇଯିବ । ତମପଡ଼ାରେ ଦେୱାନି କାର୍ଯ୍ୟ କଲାବେଳେ ସେ କିପରି ଓ କେତେବେଳେ ଏଡ଼େ ବଡ଼ ଲିପି-ସୌଧ ନିର୍ମାଣ କରି ପାରିଲେ ଏହା କଳ୍ପନା କରିହେବ ନାହିଁ ତାଙ୍କର

ସାତକାଣ୍ଡ ରାମାୟଣ ମଧ୍ୟ ଏହିପରି ବିଶାଳ ଗ୍ରନ୍ଥ ହେବ । ମହାଭାରତରୁ ଅଳ୍ପକିଛି ଛାପିଥିଲେ । ରାମାୟଣ ମଧ୍ୟ କିଛି ଛାପା ହୋଇଥିଲା । ମୋହିନୀମୋହନ ସେନାପତି ପିତାଙ୍କ ପାଣ୍ଡୁଲିପିକୁ ଉଦ୍ଧାରିବା କାର୍ଯ୍ୟ ଆରମ୍ଭ କରିଥିଲେ । ମାତ୍ର ତାଙ୍କର କାଳ ହୋଇଗଲା । ସେହି ପାଣ୍ଡୁଲିପି ମଧ୍ୟ ମିଳୁନାହିଁ ।

ରାଜା ବୈକୁଣ୍ଠନାଥ ଦେଙ୍କ ସହିତ ଏହି ରାମାୟଣ ପାଣ୍ଡୁଲିପି ଫେରସ୍ତ ନଦେବାରୁ ମୋହିନୀମୋହନ ସେନାପତିଙ୍କ ମନାନ୍ତର ହୋଇଥିଲା ।''

*(ଫକୀରମୋହନ ପରିକ୍ରମା – ପୃ ୩୭-୩୮; ଜୀବନକଥା)*

ସେହିପରି ମାୟାଧର ମାନସିଂହ ଲେଖିଛନ୍ତି–

''ସ୍ୱର୍ଗତ ଅଧ୍ୟାପକ ଲକ୍ଷ୍ମୀକାନ୍ତ ଚୌଧୁରୀ (ଫକୀରମୋହନଙ୍କ ନାତି) କହୁଥିଲେ, ମହାଭାରତ-ପାଣ୍ଡୁଲିପି ସେନାପତିଙ୍କ କଟକଘରେ ଏକ ବଡ଼ ଶିକାରେ ଝୁଲୁଥିଲା । ପୁଅ ଓ ନାତି, ଦୁଇଜଣ ଆଲୋକପ୍ରାପ୍ତ ଅଧ୍ୟାପକ ଥାଇ, ଐତିହାସିକ ପିତା-ମାତାମହଙ୍କର ନିଜ-ହାତଲେଖା ଅତି-ମୂଲ୍ୟବାନ ମହାଭାରତ ଅନୁବାଦ ଯଦି ଅବହେଳାରେ ନଷ୍ଟହୁଏ, ତେବେ ଏଦେଶ ଓ ଜାତି ଅଭିଶପ୍ତ ବୋଲିବାକୁ ହେବ ।''

*(ସରସ୍ୱତୀ ଫକୀରମୋହନ- ମାୟାଧର ମାନସିଂହ- ମାନସିଂହ ଗ୍ରନ୍ଥାବଳୀ- ତୃତୀୟ ଖଣ୍ଡ- ଗ୍ରନ୍ଥମନ୍ଦିର- ୧୯୯୭-ପୃ ୧୬୯)*

ସରଳାଦେବୀଙ୍କ ଉପର୍ଯ୍ୟୁକ୍ତ ମତ ଉପରେ କେତୋଟି ପ୍ରଶ୍ନ ମନକୁ ଆସେ । ପ୍ରଥମତଃ, 'ରାମାୟଣ ବାଲେଶ୍ୱରର ରାଜା ବୈକୁଣ୍ଠନାଥ ଦେ ନେଇଥିଲେ ଦେଖିକରି ଫେରାଇଦେବେ ବୋଲି ।' ଫକୀରମୋହନ ୧୮୮୩ ମସିହାରେ 'ରାମାୟଣ'ର ସ୍ୱତ୍ୱ ବିକ୍ରୟ କଲାପରେ ବୈକୁଣ୍ଠନାଥ ଦେ ତାଙ୍କୁ ମୁଦ୍ରଣ କରାଇଥିଲେ । ତେଣୁ ମୂଳପାଠ (ଫକୀରମୋହନଙ୍କ ଦ୍ୱାରା ଅନୂଦିତ) ନିଶ୍ଚୟ ବୈକୁଣ୍ଠନାଥଙ୍କ ନିକଟରେ ରହିଥିବ । ଏହାଛଡ଼ା ମୁଦ୍ରିତ ପୁସ୍ତକ ମଧ୍ୟ ଥାଇପାରେ । ତେଣୁ ବୈକୁଣ୍ଠନାଥ 'ରାମାୟଣ ଦେଖିବାକୁ ନେବା' ବିଶ୍ୱାସଜନକ ମନେହୁଏ ନାହିଁ । ଦ୍ୱିତୀୟତଃ, ମହାଭାରତ ୧୮ଖଣ୍ଡ । ସରଳାଦେବୀ ୧୯ଖଣ୍ଡ ମହାଭାରତ ଦେଖିଲେ କିପରି ? ତୃତୀୟତଃ, ସେ ଲେଖିଛନ୍ତି 'ରାମାୟଣ ମଧ୍ୟ କିଛି ଛାପା ହୋଇଥିଲା ।' ରାମାୟଣ କିଛି ନୁହେଁ; ମାତ୍ର ସାତକାଣ୍ଡଯାକ ଛାପାଯାଇଥିଲା । ଏପ୍ରସଙ୍ଗ ଆମ୍ଭେ ଉପରେ ଦିଆଯାଇଥିବା ସାରଣୀରେ ପ୍ରଦାନ କରିଛୁ ।

**ଆତ୍ମ-ଜୀବନୀ-ଚରିତରେ ରାମାୟଣ ପ୍ରକାଶନ'ର ସ୍ୱରୂପ –**

କବିପୁତ୍ର ମୋହିନୀମୋହନ, ଫକୀରମୋହନଙ୍କ ରଚିତ ଗ୍ରନ୍ଥମାଳାର ଯେଉଁ ସାରଣୀ 'ଆତ୍ମ-ଜୀବନ-ଚରିତ'ର 'ପରିଶିଷ୍ଟ' ରୂପେ ପ୍ରଦାନ କରିଥିଲେ, ତନ୍ମଧ୍ୟରୁ 'ରାମାୟଣ ପ୍ରକାଶନ'ର ସ୍ୱରୂପ ଦେଖନ୍ତୁ-

| | | | | | | | | |
|---|---|---|---|---|---|---|---|---|
| କ) | ବାଳକାଣ୍ଡ | - | ୨ୟ ସଂସ୍କରଣ | - | ଦେ'ଙ୍କ ଉତ୍କଳ ପ୍ରେସ | - | ୧୮୮୪ |
| ଖ) | ଅଯୋଧ୍ୟା କାଣ୍ଡ | - | ୨ୟ ସଂସ୍କରଣ | - | ଦେ'ଙ୍କ ଉତ୍କଳ ପ୍ରେସ | - | ୧୮୮୪ |
| ଗ | ଅରଣ୍ୟ କାଣ୍ଡ | - | ୧ମ ସଂସ୍କରଣ | - | ଦେ'ଙ୍କ ଉତ୍କଳ ପ୍ରେସ | - | ୧୮୮୩ |
| ଘ. | କିଷ୍କିନ୍ଧ୍ୟା କାଣ୍ଡ | - | ୧ମ ସଂସ୍କରଣ | - | ଦେ'ଙ୍କ ଉତ୍କଳ ପ୍ରେସ | - | ୧୮୮୫ |
| ଙ. | ସୁନ୍ଦରା କାଣ୍ଡ | - | ୧ମ ସଂସ୍କରଣ | - | ଦେ'ଙ୍କ ଉତ୍କଳ ପ୍ରେସ | - | ୧୮୮୭ |
| ଚ. | ଲଙ୍କା କାଣ୍ଡ | - | ୧ମ ସଂସ୍କରଣ | - | ଦେ'ଙ୍କ ଉତ୍କଳ ପ୍ରେସ | - | ୧୮୯୦ |
| ଛ. | ଉତ୍ତରା କାଣ୍ଡ | - | ୧ମ ସଂସ୍କରଣ | - | ଦେ'ଙ୍କ ଉତ୍କଳ ପ୍ରେସ | - | ୧୮୯୫ |

ବାଳକାଣ୍ଡ ଓ ଅଯୋଧ୍ୟା କାଣ୍ଡର ପ୍ରଥମ ସଂସ୍କରଣ ସଂପର୍କରେ ଆମ୍ଭେ ପୂର୍ବରୁ ସୂଚନା ଦେଇଛୁ ।

ସେ ଯାହାହେଉ ରାମାୟଣ ସାତକାଣ୍ଡଯାକ ଯେ ମୁଦ୍ରିତ ହୋଇଥିଲା ତାହା ମୋହିନୀମୋହନ ଓ ନଟବର ସାମନ୍ତରାୟଙ୍କ ପ୍ରଦତ୍ତ ସାରଣୀରୁ ଜଣାଯାଏ । କିନ୍ତୁ ଅନ୍ୟତମ ଦୁଇ ଜୀବନୀଲେଖକ ପଣ୍ଡିତ ମୃତ୍ୟୁଞ୍ଜୟ ରଥ (ସ୍ୱର୍ଗତ ଫକୀରମୋହନ) ଓ କବି ନନ୍ଦକିଶୋର ବଳ (ଉତ୍କଳ-କବି ଫକୀରମୋହନ) କେବଳ 'ରାମାୟଣ'ର ନାମ ଉଲ୍ଲେଖ କରିଛନ୍ତି ତାଙ୍କ ସାରଣୀରେ । ଅତୀବ ସୁଖର ବିଷୟ ଆଜି ଦୁଷ୍ପ୍ରାପ୍ୟ ହୋଇପଡ଼ିଥିବା ଫକୀରମୋହନ ଅନୁଦିତ ରାମାୟଣର ତିନିଗୋଟି କାଣ୍ଡ, ଯଥା- ବାଳ, ଆରଣ୍ୟ ଏବଂ ଉତ୍ତରା (ସଂପୂର୍ଣ୍ଣ) ଓ ଅଯୋଧାକାଣ୍ଡର କିୟଦଂଶ ଅଧ୍ୟାପକ ଅରବିନ୍ଦ ଗିରିଙ୍କ ଦ୍ୱାରା ସମ୍ପାଦିତ 'ଫକୀରମୋହନଙ୍କ ଦୁର୍ଲ୍ଲଭ ରଚନାବଳୀ'ରେ ସଂଗୃହୀତ ହୋଇଛି ।

**ରାମାୟଣ ଅନୁବାଦର କାରଣ–** ଫକୀରମୋହନ ଢେଙ୍କାନାଳରେ ଆସିଷ୍ଟାଣ୍ଟ୍ ମ୍ୟାନେଜର ଥିବା ସମୟରେ ତାଙ୍କର ପ୍ରଥମ ପୁତ୍ର ମନମୋହନର ମୃତ୍ୟୁହୋଇଥିଲା ଏହାପରେ ଅନୁବାଦ କାର୍ଯ୍ୟ ଆରମ୍ଭ ହୋଇଥିଲା; ଅର୍ଥାତ୍ ଏହିପୁତ୍ରର ମୃତ୍ୟୁ ହିଁ ରାମାୟଣ ଅନୁବାଦର କାରଣ । ଏ ସମ୍ପର୍କରେ ସେ ତାଙ୍କର 'ଆତ୍ମଜୀବନୀ'ରେ ଲେଖିଛନ୍ତି–

''ଶିଶୁଟି 'ଛ' ମାସ ମାତ୍ର ବଞ୍ଚି ସାମାନ୍ୟ ଗୋଟାଏ ରୋଗରେ ମରିଗଲା । ପୁତ୍ରଟି ପରମ ସୁନ୍ଦର ଥିଲା । ତାହାର ନାମ ମନୋମୋହନ ଦେଇଥିଲି । ସୁଗଠିତ ମୁଖଟି ଆଜି ପର୍ଯ୍ୟନ୍ତ ହୃଦୟରେ ଯେମନ୍ତ ଚିତ୍ରିତ ରହିଅଛି; × × × ପୁତ୍ରଟି ମରିଯିବାରୁ ଜଗତ୍ ସଂସାରଟା ମୋତେ ଅନ୍ଧକାରମୟ ଜଣାଗଲା । × × × ମୋ ସ୍ତ୍ରୀଙ୍କ ମନରେ ସାନ୍ତ୍ୱନା ଦେବା ନିମନ୍ତେ ବଳରାମ ଦାସ ରାମାୟଣ ବସାଇଲି । ଢେଙ୍କାନାଳରେ ଜଣେ ଯୁବକ ବ୍ରାହ୍ମଣ ଥିଲେ । ଦାଣ୍ଡି ପୋଥି ଭଲ ଗାଇ ପାରନ୍ତି ବୋଲି ତାଙ୍କର ନାମଡ଼ାକ ଥିଲା । ଅନେକ ଲୋକଙ୍କ ଘରେ ପୋଥି ପଢ଼ନ୍ତି, ପୋଥିପଢ଼ାଟା ତାଙ୍କର ବ୍ୟବସାୟ ଥିଲା । ପ୍ରତିଦିନ ସନ୍ଧ୍ୟା ସମୟରେ ଆସି ରାମାୟଣ ପାରାୟଣ କରିବାକୁ ଲାଗିଲେ । ସେ ଖୁବ୍ ଚିତ୍କାର କରି ଲମ୍ବାଳ ରାଗିଣୀରେ ଗାଇଯାଉଥାଆନ୍ତି ସତ୍ୟ; ମାତ୍ର ତାଙ୍କ ପାଠ ସମୟରେ ମୋ ସ୍ତ୍ରୀ ଭକଭକ କରି ମୋ ମୁହଁକୁ ଚାହିଁ ରହିଥାଆନ୍ତି, କିଛି ମାତ୍ର ବିଷୟ ବୁଝି ପାରନ୍ତି ନାହିଁ । ତାଙ୍କର ବୁଝିବା ତ ଥାଉ, ପାଠର ସମସ୍ତ ବିଷୟ ବୁଝିବା ମୋ ପକ୍ଷରେ ନିତାନ୍ତ ଅସାଧ ଥିଲା । ପୁସ୍ତକ ପାଠ ବନ୍ଦ କରାଇଦେଲି । ଢେଙ୍କାନାଳ ମହାରାଜାଙ୍କ ପୁସ୍ତକାଳୟରୁ ସଂସ୍କୃତ ବାଲ୍ମିକୀ ରାମାୟଣ ଆଣି ପଦ୍ୟାନୁବାଦ କରିବାକୁ ଲାଗିଲି । ଦିନବେଳେ ଅନୁବାଦ କରେଁ । ସନ୍ଧ୍ୟା ସମୟରେ ସ୍ତ୍ରୀଙ୍କୁ ଶୁଣାଏଁ । ପ୍ରାୟ ବୁଝାଇବାକୁ ହୁଏ ନାହିଁ । ପଦ୍ୟଗୁଡ଼ିକ ପଢ଼ିଯିବା ମାତ୍ରକେ ସେ ବୁଝିଯାଉଥିଲେ । ପ୍ରକୃତରେ ସେ କ୍ରମଶଃ ପୁତ୍ରଶୋକ ପାସୋରିବାକୁ ଲାଗିଲେ । ବାଳ ବା ଆଦିକାଣ୍ଡ ରଚନା ଓ ଛାପା ସମାପ୍ତ ହୋଇଗଲା ।''

*(ଆତ୍ମଚରିତ - ପୃ ୧୩୪-୩୫)*

ଫକୀରମୋହନ ତାଙ୍କର ବାଳିକା ପତ୍ନୀ କୃଷ୍ଣକୁମାରୀଙ୍କୁ ଅତ୍ୟନ୍ତ ସ୍ନେହ ଓ ଶ୍ରଦ୍ଧା କରୁଥିଲେ । ନିଜପୁତ୍ରର ମୃତ୍ୟୁରେ ସେ ସ୍ୱୟଂ ମ୍ରିୟମାଣ ହୋଇପଡ଼ିଥିଲେ ସୁଦ୍ଧା ନିଜର ବାଳିକା ପତ୍ନୀଙ୍କ ଦୁଃଖ ଦେଖିବା ତାଙ୍କ ପକ୍ଷରେ ସ୍ୱାଭାବିକ ନଥିଲା । ପତ୍ନୀଙ୍କ ଦୁଃଖକୁ ସେ ଅପସାରଣ କରିବାର ପ୍ରୟାସ କରିଥିଲେ । ଏହାର ଏକମାତ୍ର ଉପାୟ ଥିଲା ପ୍ରତ୍ୟେହ ପୁରାଣ ପଠନ । ପୁରାଣ (ରାମାୟଣ) ଶ୍ରବଣରେ ସେ (କୃଷ୍ଣକୁମାରୀ) ଶାନ୍ତିଲାଭ କରୁଥିଲେ । ପୁରାଣ ପଣ୍ଡା ଦ୍ୱାରା ପଠିତ ରାମାୟଣ ପତ୍ନୀଙ୍କ ବୋଧଗମ୍ୟ ନହେବାରୁ ଫକୀରମୋହନ ଅନୁବାଦ କଲେ ରାମାୟଣ । ରାମାୟଣ ଅନୁବାଦ ଓ ପ୍ରକାଶନର ପରେ

ପରେ ଫକୀରମୋହନଙ୍କର ସେ ଉଦ୍ଦେଶ୍ୟ ସଫଳ ହୋଇଥିଲା । ରାମାୟଣର ଅଯୋଧ୍ୟାକାଣ୍ଡ ଅନୁବାଦ ସରିବା ପରେ କୃଷ୍ଣକୁମାରୀ କହିଛନ୍ତି–

''ଆମ୍ଭେମାନେ ପୁତ୍ର ସକାଶେ କିମ୍ପାଇ କାନ୍ଦିବା ? ପୁତ୍ର ଆମ୍ଭମାନଙ୍କ ନାମ ରକ୍ଷା କରିବ, ଏଥିପାଇଁ ସିନା ? ପୁସ୍ତକ ଖଣ୍ଡିକ ହାତରେ ଧରି କହିଲେ, ଏହି ପୁସ୍ତକ ଆମ୍ଭମନଙ୍କ ପୁତ୍ର, ଚିରକାଳ ଆମ୍ଭମାନଙ୍କ ନାମ ରକ୍ଷା କରିବ ।''

*(ଆତ୍ମଚରିତ - ପୃ- ୧୩୬)*

ରାମାୟଣ'ର ମୁଦ୍ରଣ ଓ ବିନାମୂଲ୍ୟରେ ବିତରଣ–

'ସମ୍ବାଦବାହିକା'ର ସମ୍ପାଦକ ତଥା ଫକୀରମୋହନଙ୍କ ଦୁଃଖସୁଖର ବନ୍ଧୁ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ ଏକ 'ବିଜ୍ଞାପନ' ଦେଇଥିଲେ । ଯେଉଁଥିରେ ଲେଖାଥିଲା–

''ଫକୀରମୋହନ ସେନାପତି କୃତ ସଂସ୍କୃତ ରାମାୟଣର ଉତ୍କଳ ପଦ୍ୟାନୁବାଦ ଖଣ୍ଡେ ଖଣ୍ଡେ ପ୍ରକାଶିତ ହେବ । ବର୍ତ୍ତମାନ 'ଆଦିକାଣ୍ଡ' ଯନ୍ତ୍ରସ୍ଥ ଅଛି । ଏହି ପୁସ୍ତକ ବିନାମୂଲ୍ୟରେ ୪୦୦ଖଣ୍ଡ ବିତରିତ ହେବ ପ୍ରାର୍ଥି ମହାଶୟମାନେ ଭାଦ୍ରବମାସ ମଧ୍ୟରେ ଢେଙ୍କାନାଳ ମୁକାମ ବାବୁ ଫକୀରମୋହନ ସେନାପତିଙ୍କଠାରୁ ଆପଣା ଆପଣା ନାମଧାମ ଲେଖି ପଠେଇବେ ସମୟ ଗତେ କାହାରି ପ୍ରାର୍ଥନା ଗ୍ରାହ୍ୟ ହେବ ନାହିଁ ।'' *(ବାଲେଶ୍ୱର ସମ୍ବାଦବାହିକା - ୨୧/୮/୧୮୭୯ - ପୃ- ୧୩୬)*

ଏହି ସମ୍ବାଦଟି 'ବାହିକା'ର ୨୮/୦୮/୧୮୭୯ , ୦୪/୦୯/୧୮୭୯, ଏବଂ ୧୧/୦୯/୧୮୭୯ ରେ ପୁନଃପ୍ରକାଶିତ ହୋଇଛି ।

ଏହି ସମ୍ବାଦ ପ୍ରକାଶ ପାଇବାର ପ୍ରାୟ ନଅମାସ ପରେ ଅର୍ଥାତ୍ ୧୮୮୦ ମସିହା ଜୁନ୍ ମାସରେ 'ଉତ୍କଳ ଦୀପିକା' ଏବଂ 'ସମ୍ବାଦ ବାହିକା'ରେ 'ରାମାୟଣ, ବାଳକାଣ୍ଡ'ର ବିକ୍ରୟ କଥା ଉଲ୍ଲେଖ ଅଛି–

**(କ) ଉତ୍କଳ ଦୀପିକାରେ ପ୍ରକାଶିତ ସମ୍ବାଦିକ ରୂପରେଖ–**

''ଫକୀରମୋହନ ସେନାପତି କୃତ ପଦ୍ୟ ରାମାୟଣ ବାଳକାଣ୍ଡ ନିମ୍ନଲିଖିତ ସ୍ଥାନମାନଙ୍କରେ ବିକ୍ରୟାର୍ଥେ ପ୍ରସ୍ତୁତ ଅଛି । ମୂଲ୍ୟ ଅର୍ଥାତ୍ ୩ ଅଣା

ବାବୁ ଗୌରିଶଙ୍କର ରାୟ, କଟକ ପ୍ରିଣ୍ଟିଂ କମ୍ପାନୀ ସମ୍ପାଦକ

ବାବୁ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ, ବାଲେଶ୍ୱର ନର୍ମାଲ ସ୍କୁଲ ବାଲେଶ୍ୱର ।

*(ଉତ୍କଳ ଦୀପିକା - ୦୫/୦୬/୧୮୮୦)*

**(ଖ) ବାଲେଶ୍ୱର ସମ୍ବାଦବାହିକାରେ ଏହି ସମ୍ବାଦର ପ୍ରକାଶିତ ରୂପରେଖ –**

ବିଜ୍ଞାପନ

''ଫକୀରମୋହନ ସେନାପତି କୃତ ପଦ୍ୟ ରାମାୟଣ ବାଳକାଣ୍ଡର ମୂଲ୍ୟ ୩ ଅଣା ନିମ୍ନଲିଖିତ ବ୍ୟକ୍ତିମାନଙ୍କଠାରେ ବିକ୍ରୟାର୍ଥ ପ୍ରସ୍ତୁତ ଅଛି ।

ବାବୁ ଗୌରିଶଙ୍କର ରାୟ, କଟକ ପ୍ରିଣ୍ଟିଂ କୋମ୍ପାନୀର ସମ୍ପାଦକ କଟକ ।

ବାବୁ ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକ, ହେଡ୍‌ମାଷ୍ଟାର ନର୍ମାଲ ସ୍କୁଲ ବାଲେଶ୍ୱର ।

*(ସମ୍ବାଦବାହିକା- ୦୩/୦୬/୧୮୮୦ ପୃ-୯୨)*

ଏହି 'ବିଜ୍ଞାପନ'ଟି ବାହିକାର ୧୦/୦୬/୧୮୮୦ ଏବଂ ୧୭/୦୬/୧୮୮୦ ରେ ପୁନଃମୁଦ୍ରିତ ହୋଇଥିଲା ।

'ଉତ୍କଳ ଦୀପିକା'ର ଯେଉଁ ସ୍ଥାନରେ 'ରାମାୟଣ ବାଳକାଣ୍ଡ ବିକ୍ରୟର ସ୍ଥାନ' ସମ୍ପର୍କରେ 'ବିଜ୍ଞାପନ' ପ୍ରକାଶ ପାଇଛି, ସେହି ସ୍ଥାନରେ ଫକୀରମୋହନ ନିଜେ ଏକ ବିଜ୍ଞାପନ ଦେଇଅଛନ୍ତି–

''ମତ୍‌କୃତ ରାମାୟଣ ବାଳକାଣ୍ଡ ପ୍ରକାଶିତ ହୋଇଅଛି । ନିଜ କଟକ ସହର ନିବାସୀ ରାମାୟଣ ପ୍ରାର୍ଥୀ ମହାଶୟମାନଙ୍କଠାରେ ନିବେଦନ ସେମାନେ ଅନୁଗ୍ରହ କରି କଟକ ପ୍ରିଣ୍ଟିଂ କୋମ୍ପାନିର ଅନ୍ୟତମ କର୍ମଚାରୀ ବାବୁ ଭାଗିରଥୀ ସାଠିଆ ମହାଶୟଙ୍କଠାକୁ ଲୋକ ପଠାଇଲେ ପୁସ୍ତକ ପ୍ରାପ୍ତ ହେବେ । ଅନ୍ୟାନ୍ୟ ସ୍ଥାନ ନିବାସୀମାନଙ୍କଠାକୁ ଡାକଦ୍ୱାରା ପୁସ୍ତକ ପଠାଯିବ । ଯେଉଁମାନେ ଜୁନ୍‌ମାସ ମଧ୍ୟରେ ପୁସ୍ତକପ୍ରାପ୍ତ ନହେବେ ଅନୁଗ୍ରହ କରି ଆମ୍ଭକୁ ଲେଖିବେ ।''

ଫକୀରମୋହନଙ୍କ ରାମାୟଣକୁ କେବଳ ପ୍ରକାଶ କରିବାଟା କଟକ ପ୍ରିଣ୍ଟିଂ କୋମ୍ପାନୀ ଓ ଉତ୍କଳ ଦୀପିକାର ସମ୍ପାଦକ ଗୌରିଶଙ୍କର ରାୟଙ୍କର ଉଦ୍ଦେଶ୍ୟ ନଥିଲା ତାହାର ପ୍ରଚାର ଓ ପ୍ରସାର ଦିଗରେ ସେ ଯତ୍ନଶୀଳ ମଧ ହୋଇଥିଲେ । ଏଥିରେ ତାଙ୍କର ସହଯୋଗୀତା କରିଥିଲେ ବାଲେଶ୍ୱର ନର୍ମାଲ ସ୍କୁଲର ହେଡ଼ମାଷ୍ଟର ବାବୁ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ । ଗୋବିନ୍ଦଚନ୍ଦ୍ରଙ୍କର ବନ୍ଧୁତ୍ୱ ସମ୍ପର୍କରେ ଫକୀରମୋହନ ନିଜର 'ଆତ୍ମଜୀବନୀ'ରେ ଲେଖିଛନ୍ତି–

''ମୋହର ସୁଖ ଦୁଃଖ, ସମ୍ପଦ ବିପଦ ସକଳ ସମୟରେ ସହାୟ ଏକମାତ୍ର ନିଃସ୍ୱାର୍ଥବନ୍ଧୁ ବାଲେଶ୍ୱର ନର୍ମାଲ ସ୍କୁଲର ହେଡ଼ମାଷ୍ଟର ବାବୁ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ । ତାଙ୍କ ଅବସର ସମୟରେ ମୋ ପାଖରେ ବସି ସାନ୍ତ୍ୱନା ବାକ୍ୟଦ୍ୱାରା ମୋ ମନୋରଞ୍ଜନ କରାଉଥାଆନ୍ତି ।'' *(ଆତ୍ମଚରିତ– ପୃ- ୧୫୩)*

ତେବେ ଗୌରିଶଙ୍କର ଏଦିଗରେ ଅଧିକ ଯତ୍ନଶୀଳ ହୋଇଥିଲେ । ଏହି ସମୟରେ 'ଦୀପିକା'ରେ ପ୍ରକାଶ ପାଇଥିଲା, ରାମାୟଣ, ବାଳକାଣ୍ଡର ଏକ ସମାଲୋଚନା । ଏହାର ସମାଲୋଚକ ବେଶ୍ ଚତୁର ମନେହୁଏ । ନିଜର ପ୍ରତିକୂଳ ମତ ସହ ପୂର୍ବରୁ ଏବଂ ପରେ କିଛି ତାଳିପକା ମନ୍ତବ୍ୟ ସେ ଦେଇଛନ୍ତି । ପାଠକମାନଙ୍କର ଅବଗତି ନିମନ୍ତେ ସମାଲୋଚନାଟିର ରୂପ ଏଠାରେ ଉଦ୍ଧୃତ କଲୁଁ–

"ଓଡିଆ ଭାଷା ଓ ଓଡିଶାର ଲୋକଙ୍କ ଉନ୍ନତି ସକାଶ ସର୍ବଦା ଯତ୍ନବାନ ଥିବା କଥିତରେ ତହିଁର କୃତଜ୍ଞତାସ୍ୱରୂପ ଏ ପୁସ୍ତକ ଶ୍ରୀଯୁକ୍ତ ବିମସ ସାହେବଙ୍କୁ ଉତ୍ସର୍ଗିତ ହୋଇଅଛି । ଆମ୍ଭେମାନେ ଦେଖୁଁ ଯେ ଓଡିଆ ଭାଷାରେ ରାମାୟଣ ଗ୍ରନ୍ଥର ଅଭାବ ନାହିଁ । ବଳରାମ ଦାସଙ୍କ ରାମାୟଣ ପୁରାଣ ସ୍ୱରୂପ ପଠିତ ହୁଅଇ ଏବଂ କୃଷ୍ଣ ସିଂହଙ୍କ ରାମାୟଣ ସେହି ଉଦ୍ଦେଶ୍ୟରେ ପ୍ରଣୀତ ଏବଂ ଉତ୍କୃଷ୍ଟ ହୋଇଥିଲେହେଁ ତହିଁର ଆଦର ତେତେ ବଢିନାହିଁ । ଏପରି ବିଚିତ୍ର ରାମାୟଣ ସୁଚିତ୍ର ରାମାୟଣ ଆଧାତ୍ମିକ ରାମାୟଣ ଇତ୍ୟାଦି ଅନେକ ଗ୍ରନ୍ଥ ଭାଷାରେ ଅଛି । ଏତେ ରାମାୟଣ ଥିବା ପ୍ରତ୍ୟକ୍ଷେ ଗ୍ରନ୍ଥକାର କି ଭାବି ଆଉଖଣ୍ଡେ ରାମାୟଣ ଲେଖିବାକୁ ପ୍ରବୃତ୍ତ ହେଲେ ତାହା ବୁଝାଇ କହିଥିଲେ ଆମ୍ଭମାନଙ୍କର ସଂଶୟ ଦୂର ହୁଅନ୍ତା । ଆମ୍ଭେମାନେ ମନେକରୁଁକି ଏଥିରେ ଯେତେ ଶ୍ରମ କରିଅଛନ୍ତି କୌଣସି ନୂତନ ବିଷୟରେ ସେ ଶ୍ରମକୁ ନିଯୋଗ କରିଥିଲେ ଅଧିକ ସାଧାରଣ ଉପକାର ହୁଅନ୍ତା । ଯେଉଁମାନଙ୍କର ପୁସ୍ତକ ପ୍ରକାଶ କରିବାର ସମୟ ଓ ସଙ୍ଗତି ଅଛି ତାହାଙ୍କଠାରେ ଆମ୍ଭେମାନେ କିଛି ଅଧିକ ଆଶା କରୁଁ । ଯାହାହେଉ ସମାଲୋଚିତ ପୁସ୍ତକ ମନ୍ଦ ହୋଇନାହିଁ । ଆମ୍ଭେମାନେ ତହିଁର କେତେକ ଅଂଶ ପଢି ଦେଖିଲୁ ଯେ ଏହା ସରଳଭାଷା ଓ ଛନ୍ଦରେ ରଚିତ ହୋଇଅଛି ଏବଂ ଗ୍ରନ୍ଥାକାର ତହିଁର ମୂଲ୍ୟ ଅଳ୍ପ ପରିମାଣରେ ଧାର୍ଯ୍ୟ କରିଥିବାରୁ ଅନୁମାନ ହେଉଅଛି ଯେ ସେ ଲାଭର ପ୍ରତ୍ୟାଶା ନ କରି ରାମାୟଣର ଅତି ଚମତ୍କାର ଓ ନିର୍ଦ୍ଦୋଷ ନୀତି ଓ ଚରିତ ସର୍ବସାଧାରଣଙ୍କର ହୃଦୟଙ୍ଗମ

କରିବା ଉଦ୍ଦେଶ୍ୟରେ ଏହା ପ୍ରଣୟନ କରିଅଛନ୍ତି । ଆମ୍ଭମାନଙ୍କର ଏକାନ୍ତ ଆଶା ଯେ ତାହାଙ୍କର ଉଦ୍ଦେଶ୍ୟ ସଫଳ ହେଉ ।" *(ଉତ୍କଳ ଦୀପିକା - ୨୬/୦୬/୮୦, ପୃ. ୧୦୩)*

ସେହି ବର୍ଷ ଅର୍ଥାତ୍ ୧୮୮୦ ମସିହାରେ 'ସମ୍ବାଦବା..କା' ଏହାର 'ପ୍ରାପ୍ତିସ୍ୱୀକାର' କରି ଲେଖିଛି–

"ଏଥିପୂର୍ବେ ଯେଉଁ ରାମାୟଣ ମୁଦ୍ରିତ ହେଉଥିବା ଓ ସେଥିରୁ ୪୦୦ ଖଣ୍ଡ ବିତରିତ ହେବାର ବିଜ୍ଞାପନ ବାହିକାରେ ବାହାରି ଥିଲା ବର୍ତ୍ତମାନ ସେହି ରାମାୟଣର ବାଳକାଣ୍ଡ (ଆଦ୍ୟକାଣ୍ଡ) ପ୍ରକାଶିତ ହୋଇଅଛି । ଗ୍ରନ୍ଥାକାର ଶ୍ରୀଯୁକ୍ତ ବାବୁ ଫକୀରମୋହନ ସେନାପତି ମହାଶୟ ସେଥିରୁ ଖଣ୍ଡିଏ ଆମ୍ଭମାନଙ୍କୁ ଉପହାର ଦେଇଅଛନ୍ତି । ବାଳକାଣ୍ଡ କଟକ ପ୍ରିଣ୍ଟି କୋମ୍ପାନିଙ୍କ ଯନ୍ତ୍ରାଳୟରେ ଆଠପେଜି ଫର୍ମାରେ ୮୪ ପୃଷ୍ଠାରେ ମୁଦ୍ରିତ, ଓଡ଼ିଶାର ପୁରୁଣା ବନ୍ଧୁ ମହାତ୍ମା ବିମ୍ସ ସାହେବଙ୍କ ନାମରେ ଉତ୍ସର୍ଗିତ ଓ ଶ୍ରୀଯୁକ୍ତ ବାବୁ ମଧୁସୂଦନ ରାଓଙ୍କ ଦ୍ୱାରା ସଂଶୋଧିତ, ମୂଲ୍ୟ ଟ ୦/୩ ଅଣାମାତ୍ର । ପୁସ୍ତକର କଳେବର ପ୍ରତି ମୂଲ୍ୟ ଶସ୍ତା ହୋଇଅଛି । ପୁସ୍ତକର ଦୋଷଗୁଣ ପରେ ସମାଲୋଚନ କରିବୁଁ ।"

*(ବାଲେଶ୍ୱର ସମ୍ବାଦବାହିକା - ୦୩/୦୬/୧୮୮୦, ପୃ. ୮୯)*

'ପୁସ୍ତକପ୍ରାପ୍ତି ଓ କୃତଜ୍ଞତା ସ୍ୱୀକାର' ଶିରୋନାମାରେ ଏହି ସମ୍ବାଦଟି ପ୍ରକାଶ ପାଇଥିଲା । ଏଠାରେ ଗୋଟିଏ ବିଷୟ ଅବଶ୍ୟ ଉଲ୍ଲେଖ କରାଯାଇପାରେ ଯେ ଅଧ୍ୟାପକ ଡଃ ନଟବର ସାମନ୍ତରାୟ 'ଫକରୀମୋହନଙ୍କ ରଚନାରେ ପ୍ରକାଶ ସମୟ' ପ୍ରବନ୍ଧରେ 'ରାମାୟଣ, ଆଦିକାଣ୍ଡ ବା ବାଳକାଣ୍ଡ' ପ୍ରସଙ୍ଗରେ ଲେଖିଛନ୍ତି – "୧୮୭୯ ସାଲ ଅଗଷ୍ଟ ମାସରେ ଯନ୍ତ୍ରସ୍ଥ । ୧୮୮୦ ସାଲ ଜୁନ୍‌ମାସ ବେଳକୁ ଏଥିରୁ ୪୦୦ ଖଣ୍ଡ ବିତରିତ ।" *(ବ୍ୟାସକବି ଫକୀରମୋହନ-ନଟବର ସାମନ୍ତରାୟ, ପୃ. ୧୭୮–୧୯୭୨ ଦ୍ୱିତୀୟ ସଂସ୍କରଣ)*

ତା ୨୧/୦୮/୧୮୭୯ରିଖ ସମ୍ବାଦବାହିକାରେ ଉଲ୍ଲେଖ ଅଛି ଯେ "ଏହି ପୁସ୍ତକ ବିନାମୂଲ୍ୟରେ ୪୦୦ ଖଣ୍ଡ ବିତରିତ ହେବ ।" କିନ୍ତୁ ଅଧ୍ୟାପକ ସାମନ୍ତରାୟ '୪୦୦ ଖଣ୍ଡ ବିତରିତ ' ବୋଲି ଉଲ୍ଲେଖ କରିବାରୁ ତାହା 'ହୋଇସାରିଛି' ଅର୍ଥରେ ବୁଝାଉଅଛି । ଏଠାରେ 'ହୋଇସାରିଛି'ର କୌଣସି ପ୍ରମାଣ ଆମ୍ଭ ଦୃଷ୍ଟିକୁ ଆସିନାହିଁ ।

'ସମ୍ବାଦବାହିକା' ଏବଂ 'ଉତ୍କଳଦୀପିକା' ଫକୀରମୋହନଙ୍କ ରାମାୟଣର ପ୍ରକାଶନ, ବିତରଣ ଏବଂ ସୁସମାଲୋଚନ ଦିଗରେ ଅଧିକ ଯତ୍ନଶୀଳ ଥିବାର ପ୍ରମାଣ ଏହି ଦୁଇ ପତ୍ରିକାରେ ପ୍ରକାଶିତ ସମ୍ବାଦରୁ ସୁସ୍ପଷ୍ଟ । ପରବର୍ତ୍ତୀ ସମୟରେ ଯେତେବେଳେ 'ସମ୍ବାଦବାହିକା'ରେ 'ରାମାୟଣ, ବାଳକାଣ୍ଡ'ର ସମାଲୋଚନା ପ୍ରକାଶିତ ହୁଏ । ତାହା ଥିଲା ଫକୀରମୋହନଙ୍କ ସମ୍ପୂର୍ଣ୍ଣ ପକ୍ଷପାତୀ । ଜିଜ୍ଞାସୁ ତଥା ବିଦ୍ୱାନ ପାଠକମାନଙ୍କ ଅବଗତି ନିମନ୍ତେ ସମାଲୋଚନାଟିକୁ ଏଠାରେ ସମ୍ପୂର୍ଣ୍ଣ ଉଦ୍ଧାର କରାଗଲା –

"ଓଡିଶାରେ ବଳରାମ ଦାସଙ୍କ ରଚିତ ତାଳପ୍ରତରେ ଲିଖିତ ୭କାଣ୍ଡ ରାମାୟଣ ପ୍ରଚଳିତ । ବଳରାମ ଦାସଙ୍କ ଲେଖା ସରଳ, କିନ୍ତୁ କାବ୍ୟ ରଚନାରେ ଯେଉଁ ଗୁଣମାନ ଥିଲେ ଲେଖକ କବି ପଦବାଚ୍ୟ ହୋଇପାରନ୍ତି, ବଳରାମ ଦାସଙ୍କଠାରେ ସେସବୁ ଗୁଣ ନଥିଲା । ଯତିଭଙ୍ଗ କବିତାର ଗୋଟିଏ ମହତ୍‌ଦୋଷ ଆହୁରି ମିତ୍ରାକ୍ଷର ଛନ୍ଦର କବିତାରେ ଉପାଧା ସ୍ୱରର ଅମିଳନ ୨ୟ ଦୋଷ । ଯେଉଁ କବି ଉପାଧା ସ୍ୱର ମିଳାଇ ନ ପାରନ୍ତି, ଆମ୍ଭେମାନେ ସେମାନଙ୍କୁ ଯେପରି ଦୋଷ ଦେଉଁନା, କିନ୍ତୁ ଯତିଭଙ୍ଗ ଦୋଷ ନିମନ୍ତେ ସମ୍ପୂର୍ଣ୍ଣ ଦୋଷ ଦେଉଁ । ବଳରାମ ଦାସଙ୍କ କବିତା ଯତିଭଙ୍ଗ ଦୋଷ ପୂର୍ଣ୍ଣ । ଅପିଚ–କବିଗୁରୁ ବାଲ୍ମିକୀଙ୍କ ରଚିତ ରାମାୟଣକୁ ଚାହିଁବା ବେଳକୁ ବଳରାମ ଦାସଙ୍କ ରଚିତ ରାମାୟଣ ସେଥିର ଆଭାସ ମାତ୍ର । ବଳରାମଦାସ ଅନେକ ସ୍ଥଳରେ ଅନେକ ସାର ସାର ବିଷୟର ଆଦୌ ସୂଚନା କରିନାହାନ୍ତି । ଙସିତ ଗ୍ରନ୍ଥର କବି ଫକୀରମୋହନ ବାବୁ ଉପାଧା ସ୍ୱର ପ୍ରତି ଯେବେକି ଅଧିକ ଦୃଷ୍ଟି ରଖିନାହାନ୍ତି; ମାତ୍ର ଯତି ପ୍ରତି ବିଶେଷ ଦୃଷ୍ଟି ରଖିଅଛନ୍ତି । ପୁଣି ଏହା ମୂଳଗ୍ରନ୍ଥର ଅବିକଳ ଅନୁବାଦ ଅଟେ । କବିବୃନ୍ଦ ବାଲ୍ମିକୀ

ରାମାୟଣର ଭାଷାକୁ ଯେପରି ବିଶଦ୍ କରିଅଛନ୍ତି, ଫକୀରମୋହନ ବାବୁ ମଧ୍ୟ ତାଙ୍କରି ଅନୁକରଣ କରିଅଛନ୍ତି । ବାସ୍ତବରେ ରାମାୟଣ ଭଳି ଗ୍ରନ୍ଥର ଦୋଷଭାବ ଆଦୌ ନାହିଁ ଏମନ୍ତ ନୋହେ । ସ୍ଥାନେ ସ୍ଥାନେ କିଛି କିଛି ଦୋଷ ଅଛି, ପୁଣି ମୁଦ୍ରାଦୋଷ ସେହି ଦୋଷକୁ ଅଧିକ କରି ପକାଇଅଛି ; କିନ୍ତୁ ଗୁଣଭାଗକୁ ଚାହିଁବା ବେଳକୁ ଦୋଷଭାଗ ଅତି ଅଳ୍ପ ଓ ଗୁଣଭାଗ ତାକୁ ବୁଡାଇ ପକାଇଅଛି ।

× × × ×

ଆମ୍ଭେମାନେ ଭରସା କରୁଁ, ଫକୀରମୋହନ ବାବୁ ସାତକାଣ୍ଡ ଜା(ଯା)କ ଅନୁବାଦ କରି ପ୍ରଚାର କରିବେ । ତାହା ହେଲେ ତାଙ୍କର ଗୋଟିଏ ଯଶଃ ଓଡିଶ୍ୟାରେ ଅନେକ ଦିନ ପର୍ଯ୍ୟନ୍ତ ବିରାଜିତ ।”

*(ସମ୍ବାଦବାହିକା - ୧୭/୦୬/୧୮୮୦- ୧୩/୨୫, ପୃ. ୯୮-୯୯)*

ରାମାୟଣ’ର ବାଳକାଣ୍ଡ – ରାମାୟଣର ବାଳକାଣ୍ଡଟିକୁ ଫକୀରମୋହନ ଉତ୍କଳର ପରମ ହିତୈଷୀ ଶ୍ରୀଯୁକ୍ତ ଜନ୍ ବିମ୍ସଙ୍କୁ ଉତ୍ସର୍ଗ କରିଛନ୍ତି । ଫକୀରମୋହନଙ୍କ ପ୍ରତି ବିମ୍ସ ସାହେବଙ୍କର ଅବଦାନ କ’ଣ ତାହା ଏକ ସ୍ୱତନ୍ତ୍ର ପ୍ରବନ୍ଧର ଅପେକ୍ଷା ରଖେ । ଉତ୍ସର୍ଗପତ୍ରରେ ଲେଖାଅଛି –

**“To,**
**JOHN BEAMES ESQUIRE B.C.S**
**HONOURED SIR,**

I beg most respectfully to dedicate this work to you, as a token of the affectionate gratitude, which Orissa has always felt towards you for the intelligent and heart-felt interest you have evinced in the improvement of the Oriya language and in the welfare of her people.

I am,
Honoured Sir,
Your most obidient Servent
PHAKIR MOHAN SENAPATI

Dhenkanal
1880,

*(ରାମାୟଣ, ବାଳକାଣ୍ଡ – ସଂଗ୍ରାହକ – ସୁଦର୍ଶନ ଆଚାର୍ଯ୍ୟ – ୧୯୯୩ – ଉତ୍ସର୍ଗପତ୍ର)*

ଫକୀରମୋହନ ମଧୁସୂଦନ ରାଓଙ୍କର ‘କୃତଜ୍ଞତା ସ୍ୱୀକାର’ କରି ଲେଖିଛନ୍ତି –

“ଆମ୍ଭେ କୃତଜ୍ଞତା ସହିତ ସ୍ୱୀକାର କରୁଅଛୁଁ ଆମ୍ଭର ପ୍ରିୟତମ ବନ୍ଧୁ କଟକ କଲେଜିଏଟ୍ ସ୍କୁଲର ଦ୍ୱିତୀୟ ଶିକ୍ଷକ ଶ୍ରୀଯୁତ ବାବୁ ମଧୁସୂଦନ ରାଓ ମହାଶୟ ଅନୁଗ୍ରହ ପୂର୍ବକ ଏହି ପୁସ୍ତକର ପାଣ୍ଡୁ ଲେଖ୍ୟ ସଂଶୋଧନ କରିଦେଇଅଛନ୍ତି । ଇତି ।

ଶ୍ରୀ ଫକୀର ମୋହନ ସେନାପତି
ଢେଙ୍କାନାଳ

*(ତତ୍ରୈବ - କୃତଜ୍ଞତାସ୍ୱୀକାର)*

ଅଯୋଧ୍ୟାକାଣ୍ଡ – ୧୮୮୧ ସାଲରେ ଅଯୋଧ୍ୟାକାଣ୍ଡ ପ୍ରକାଶ ପାଏ । ଫକୀରମୋହନଙ୍କର ଅନୁବାଦ କରିବାରେ ଯେଉଁ ପରିଶ୍ରମ, ତାହା ଏଥିରୁ ଅନୁଧ୍ୟାନ ଯୋଗ୍ୟ । ‘ଅଯୋଧ୍ୟାକାଣ୍ଡ’ ପ୍ରକାଶ ପାଇବା ପରେ ଫକୀରମୋହନ ଏକ ‘ବିଜ୍ଞାପନ’ ଦେଇଥିଲେ –

“ମତ୍କୃତ ରାମାୟଣ ଅଯୋଧ୍ୟା କାଣ୍ଡ ମୁଦ୍ରିତ ହୋଇଅଛି । ପୂର୍ବଗ୍ରାହକ ମହୋଦୟଗଣ ଆପଣା ଆପଣା ନାମଧାମ ଲେଖି ପଠାଇଲେ ଓ ଡାକମାସୁଲ ସକାଶ ଏକଏକ ଅଣାର ଡାକ ଟାଙ୍କିଟ ପଠାଇଲେ ଅବିଳମ୍ବେ ସେମାନଙ୍କଠାରୁ ପୁସ୍ତକ ପଠାଯିବ । ଆମ୍ଭେ ରାମାୟଣ ବାଳକାଣ୍ଡ ଗ୍ରାହକମାନଙ୍କ ନିକଟକୁ

ପଟା(ଠା)ଇଥିଲୁଁ, ସେଥିରୁ କେତେକ ଖଣ୍ୟ ପୁସ୍ତକ ସେମାନଙ୍କଠାରେ ନ ପହୁଞ୍ଚି ଡେଡଲେଟର ଅଫିସକୁ ନୀତ ହୋଇଥିବାରୁ ଆମ୍ଭେ ଏହି ନିୟମ କରିଅଛୁଁ କି ଗ୍ରାହକ ମହାଶୟମାନେ ପୁର୍ନବାର ଆମ୍ଭକୁ ଆପଣା ଆପଣା ସମ୍ପୂର୍ଣ୍ଣ ଠିକଣା ନଲେଖିଲେ ପୁସ୍ତକ ପଠାଯିବ ନାହିଁ ।"

*(ସମ୍ବାଦବାହିକା - ୧୩/୧୦/୧୮୮୧)*

ଏହି ବିଜ୍ଞାପନଟି ସମ୍ବାଦବାହିକା ତା ୨୦/୧୦/୧୮୮୧ ରିଖରେ ମଧ୍ୟ ପୁନଃମୁଦ୍ରିତ ହୋଇଅଛି । ଏହା ହେଉଛି ୧୮୮୧ ସାଲର କଥା । ଫକୀରମୋହନ ଢେଙ୍କାନାଳରୁ ଇସ୍ତଫା ଦେଇ ଫେରିଲାପରେ ଅର୍ଥାଭାବର ସମ୍ମୁଖୀନ ହୋଇଥିଲେ । ଏଠାରେ ଫକୀରମୋହନଙ୍କର ଉକ୍ତିଟି ଉଲ୍ଲେଖ କରାଯାଇପାରେ –

"ରାମାୟଣ ସାତକାଣ୍ଡ ଲେଖିସାରି ମହାରାଜା (ସେ ସମୟରେ କୁମାର) ବୈକୁଣ୍ଠନାଥ ଦେଙ୍କ ପରାମର୍ଶରେ ମହାଭାରତ ଲେଖା ଆରମ୍ଭ କରିଦେଇଥିଲି । ଦିନମାନରେ ତିନି ଚାରିଘଣ୍ଟା ବସି ମହାଭାରତ ଅନୁବାଦ କରେଁ, ସେହି ସମୟଟା ପରମ ସୁଖରେ ଅତିବାହିତ ହୁଏ । ପୁସ୍ତକ ଲେଖିବା ସମୟରେ ପାର୍ଥିବ କୌଣସି ପ୍ରକାର ଦୁଃଖ ଦୁର୍ଦ୍ଦଶା ମନରେ ପଡ଼େ ନାହିଁ । ରାମାୟଣ କେତେକ କାଣ୍ଡ ପର୍ଯ୍ୟନ୍ତ ଛାପା ହୋଇଯାଇଥିଲା; ଅବଶିଷ୍ଟ କାଣ୍ଡମାନ ଛାପା ସକାଶେ ଅର୍ଥାଭାବ। କୁମାର ବୈକୁଣ୍ଠନାଥ ଦେ ସ୍ୱତନ୍ତ୍ର ରୂପେ ସାତକାଣ୍ଡ ରାମାୟଣ ଛପାଇ ଦେବାକୁ ସ୍ୱୀକୃତ ହେଲେ । ପ୍ରକାଶକରୂପେ ରାଜା ଶ୍ୟାମାନନ୍ଦ ଦେ ବାହାଦୂରଙ୍କ ନାମରେ ପୁସ୍ତକ ମୁଦ୍ରିତହେବା କଥା ସ୍ଥିର ହେଲା । ରାଜା ବାହାଦୂର ପୁରସ୍କାର ସ୍ୱରୂପ ମୋତେ ସାଢ଼େ ସାତଟଙ୍କା ଦେଲେ । ପୂର୍ବରୁ କିଛି ଦେଣା ଥିଲା, ସେହି ଟଙ୍କାରେ ସମସ୍ତ ଦେଣା ପରିଶୋଧ କରି ପକାଇଲି ।" *(ଆତ୍ମଚରିତ - ପୃ. ୧୫୫-୫୬)*

ଏଠାରେ ପାଠକମାନଙ୍କ ସମ୍ମୁଖରେ ଫକୀରମୋହନଙ୍କର କେତେକ ଉକ୍ତିକୁ ସ୍ପଷ୍ଟ କରିଦେବା ଆବଶ୍ୟକ ମନେହୁଏ –

ପ୍ରଥମତଃ, ରାମାୟଣ କେତେକ କାଣ୍ଡ ପର୍ଯ୍ୟନ୍ତ ଛାପା ହୋଇଯାଇଥିଲା ।

ଦ୍ୱିତୀୟତଃ, ରାଜା ବାହାଦୂର ପୁରସ୍କାର ସ୍ୱରୂପ ମୋତେ ସାଢ଼େ ସାତଶହ ଟଙ୍କା ଦେଲେ ।

ପ୍ରଥମ କଥାଟି ଏଠାରେ ବିଚାର କରାଯାଉ ଯେ, ନିଜଦ୍ୱାରା ଅନୁଦିତ ରାମାୟଣ କେତେଖଣ୍ଡ ପ୍ରକାଶ ପାଇଥିଲା ତାହା ସଠିକ ଭାବରେ ସେ କହିପାରିନାହାନ୍ତି । ଏହାର କାରଣ ଅତିଶୟ ବୃଦ୍ଧ ହୋଇଯାଇ ଥିବାରୁ ତାହା ତାଙ୍କର ସ୍ମୃତିରେ ସ୍ଥାନପାଇପାରି ନାହିଁ । ୧୮୮୦ରୁ ୮୩ ମଧ୍ୟରେ ମାତ୍ର ଦୁଇଗୋଟି କାଣ୍ଡ ମୁଦ୍ରିତ ବା ପ୍ରକାଶ ପାଇଥିଲା । ଯଥା – ବାଳକାଣ୍ଡ ଏବଂ ଅଯୋଧ୍ୟାକାଣ୍ଡ ।

ଦ୍ୱିତୀୟ କଥାଟି ହେଉଛି ରାଜା ଶ୍ୟାମାନନ୍ଦ ଦେ ଫକୀରମୋହନଙ୍କୁ ଯେଉଁ ସାଢ଼େ ସାତଶହ ଟଙ୍କା ପୁରସ୍କାର ସ୍ୱରୂପ ଦେଲେ ବୋଲି ଫକୀରମୋହନ ଲେଖିଛନ୍ତି, ତାହା ସତ୍ୟ ନୁହେଁ । ତାହା ପୁରସ୍କାରର ଟଙ୍କା ନଥିଲା, ମାତ୍ର ସ୍ୱତ୍ୱ ବିକ୍ରୟର ଅର୍ଥ ଥିଲା । ଫକୀରମୋହନ ରାମାୟଣର ସ୍ୱତ୍ୱ ବିକ୍ରୟ କରିଦେଇଥିଲେ । ଏହାର ପ୍ରମାଣ ହେଉଛି 'ସମ୍ବାଦବାହିକା'ରେ ପ୍ରକାଶିତ ଏକ ସମ୍ବାଦ । ଏଥିରେ ଏକ 'ବିଜ୍ଞାପନ' ଦେଇ ଫକୀରମୋହନ ନିଜେ ଲେଖିଛନ୍ତି –

"ମତ୍କୃତ ରାମାୟଣ ସତ୍ୱାଧିକାର ଶ୍ରୀଯୁକ୍ତ କୁମାର ବୈକୁଣ୍ଠନାଥ ଦେ ମହୋଦୟଙ୍କୁ ବିକ୍ରୟ କଲୁଁ । ଅତଃପର ରାମାୟଣ ସହିତ ଆମ୍ଭର କୌଣସି ସମ୍ପର୍କ ନ ରହିଲା ।"

*(ସମ୍ବାଦବାହିକା - ୧୫/୦୮/୧୮୮୩)*

ଏହି ସମ୍ବାଦର ଠିକ୍ ବର୍ଷକ ପରେ ଅର୍ଥାତ୍ ୧୮୮୪ ମସିହା ଜୁଲାଇମାସରେ 'ସମ୍ବାଦବାହିକା'ର ସମ୍ପାଦକ 'ପୁସ୍ତକ ପ୍ରାପ୍ତି'ରେ ଲେଖିଛନ୍ତି –

"କୃତଜ୍ଞତା ସହିତ ସ୍ୱୀକାର କରୁଅଛୁଁ ଯେ, ଶ୍ରୀଯୁକ୍ତ ରାଜା ଶ୍ୟାମାନନ୍ଦ ଦେଙ୍କ ପ୍ରକାଶିତ ଏବଂ ଫକୀରମୋହନଙ୍କ ପ୍ରଣୀତ ରାମାୟଣର ବାଳକାଣ୍ଡ, ଅଯୋଧ୍ୟାକାଣ୍ଡ ଏବଂ ଅରଣ୍ୟକାଣ୍ଡ ଏହି ତିନିଖଣ୍ଡ ପୁସ୍ତକ ଦେଙ୍କ ପ୍ରେସ୍‌ର ସମ୍ପାଦକ ମହାଶୟଙ୍କଠାରୁ ଉପହାର ପାଇଅଛୁଁ । ବାବୁ ଫକୀରମୋହନ ସେନାପତି ପ୍ରଥମ ଦୁଇଖଣ୍ଡ ପ୍ରକାଶ କରିଥିଲେ; ତଦନନ୍ତର ରାମାୟଣର ସ୍ୱତ୍ୱ ପ୍ରଂସିତ ରାଜାଙ୍କୁ ବିକ୍ରୟ କରିଦେବାରୁ ସେ ଅଦ୍ୟାବ୍ଧି ପ୍ରକାଶ କରୁଅଛନ୍ତି । ରାମାୟଣର ଭାଷା କେମନ୍ତ ସୁଲଳିତ ହୋଇଅଛି ଏବଂ ଗ୍ରନ୍ଥାକାର ଅତିଶୟ ସାବଧାନ ହୋଇ ମୂଳଗ୍ରନ୍ଥର ଭାବ କି ରୂପେ ରକ୍ଷା କରିଅଛନ୍ତି, ଏଥିପୂର୍ବେ ସେଥିରେ ସମାଲୋଚନ କରିଅଛୁଁ, ମଧ୍ୟ କେତେକ ସ୍ଥଳଗୁ ଉଦାହରଣ ଦେଇଅଛୁଁ । ଏତେବେଳେ ପୁନର୍ବାର ସମାଲୋଚନ କରିବା ଅନାବଶ୍ୟକ । ଏ ସ୍ଥଳେ ଆମ୍ଭେମାନେ ଅନରେବୁଲ କୁମାର ବୈକୁଣ୍ଠନାଥ ଦେ ମହାଶୟଙ୍କର ଯଥେଷ୍ଟ ପ୍ରଶଂସା କରୁଅଛୁ । ସେ ଆଉ ଯେତେବେଳେ ପୁସ୍ତକ ପ୍ରକାଶ କରୁଅଛନ୍ତି, ତାହା ଅଳ୍ପକାଳ ସ୍ଥାୟୀ । ଶଂସିତ ରାମାୟରଙ୍କୁ ଆପଣା ପିତାଙ୍କ ନାମରେ ପ୍ରକାଶ କରାଇବାଦ୍ୱାରା ସେ ଯେଉଁ ଯଶ ଅର୍ଜନ କରୁଅଛନ୍ତି, ତାହା ଦୀର୍ଘକାଳସ୍ଥାୟୀ ହେବ । ବର୍ତ୍ତମାନ ଶଂସିତ ରାମାୟଣର ପ୍ରଚାର ଅଧିକ ହେଉନାହିଁ ବୋଲି କୁମାର ମହାଶୟ ଦୁଃଖିତ ହେବେ ନାହିଁ; କିନ୍ତୁ ସମୟରେ ସେଥିରେ ଆଦର ଏପରି ବଢ଼ିବ ଯେ, ବଳରାମଙ୍କ ରାମାୟଣ ଓଡ଼ିଶ୍ୟା ସମାଜରେ ଆଉ ସ୍ଥାନ ପାଇବ ନାହିଁ । ଯେବେ ଶିକ୍ଷିତ ଲୋକମାନେ ରାମାୟଣ ପଢ଼ିବାକୁ ଇଚ୍ଛା କରିବେ, ତେବେ ସେମାନେ ରାଜାଙ୍କ ପ୍ରକାଶିତ ରାମାୟଣକୁ ଆଦର ସହିତ ପଢ଼ିବେ । ବଳରାମ ଦାସଙ୍କ ରାମାୟର ଛୁଇଁବେ ନାହିଁ । ବର୍ତ୍ତମାନ ସେଥିରେ ଆଭାସ ଦେଖାଗଲାଣି । ଆମ୍ଭେମାନେ ଏକାନ୍ତ ଅନୁରୋଧ କରୁଅଛୁଁ ଯେ, କୁମାର ମହାଶୟ ଏହିପରି କାର୍ଯ୍ୟରେ ବ୍ରତୀ ହେଉନ୍ତୁ ।"

*(ସମ୍ବାଦବାହିକା - ୧୭/.୦୭/ ୧୮୮୪, ପୃ. ୧୧୪)*

ପାଠକମାନେ ଲକ୍ଷ୍ୟ କରିପାରନ୍ତି, ଏଥିରେ ମଧ୍ୟ ସ୍ୱତ୍ୱ ବିକ୍ରୟ ପ୍ରସଙ୍ଗ ଉଲ୍ଲିଖିତ ଅଛି । ଏ ସମ୍ପର୍କରେ (ସ୍ୱତ୍ୱ ବିକ୍ରୟ ପ୍ରସଙ୍ଗ) ଫକୀରମୋହନ ନଲେଖିବାର ଗୋଟିଏ କାରଣ ହୋଇପାରେ ଯେ ବୋଧହୁଏ ତାଙ୍କର ସାରସ୍ୱତ କୃତିକୁ ଅର୍ଥାଭାବ ହେତୁ ବିକ୍ରୟ କରିଦେଇଛନ୍ତି ତାହା ସେ ଜଣାଇଦେବାକୁ ଇଚ୍ଛାକରି ନାହାନ୍ତି ।

ରାମାୟଣର ଅନୁବାଦ, ପ୍ରକାଶନ ଓ ସ୍ୱତ୍ୱବିକ୍ରୟ ଗୋଟିଏ ତ୍ରିଭୂଜର ଏମାନେ ତିନୋଟି ବିନ୍ଦୁ । ସମ୍ବାଦବାହିକା ମାଧ୍ୟମରେ ଏହି ତ୍ରିଭୂଜ ମଧ୍ୟକୁ ଟାଣି ହୋଇଆସନ୍ତି ଫକୀରମୋହନ, ବୈକୁଣ୍ଠନାଥ ଦେ ଏବଂ ଶ୍ୟାମାନନ୍ଦ ଦେ । ଏହି ତିନିଜଣ ମଧ୍ୟ ସେହି ତ୍ରିଭୂଜର ଅନ୍ୟ ଏକ ଏକ ବିନ୍ଦୁ । ଗୋବିନ୍ଦ ପଟ୍ଟନାୟକ ଥିଲେ ଫକୀରମୋହନଙ୍କର ଅନ୍ତରଙ୍ଗ ବନ୍ଧୁ ତଥା ସମ୍ବାଦବାହିକାର ସମ୍ପାଦକ । ତେଣୁ ରାମାୟଣ ସମ୍ପର୍କରେ ଯେତେ ସମାଲୋଚନା ସମ୍ବାଦବାହିକାରେ ପ୍ରକାଶ ପାଇଁ ଆସୁଥିଲା ତାହାକୁ ସେ ତତ୍‌କ୍ଷଣାତ୍ ପତ୍ରିକାରେ ସ୍ଥାନିତ କରି ଫକୀରମୋହନଙ୍କୁ ପ୍ରଥମ ଓ ଶ୍ରେଷ୍ଠ ସ୍ଥାନ ଦେଉଥିଲେ । କିନ୍ତୁ ୧୮୮୭ ମସିହା ବେଳକୁ ଯେତେବେଳେ 'ଓଡ଼ିଆ' (ସମକାଳୀନ ଅନ୍ୟ ଏକ ପତ୍ରିକା)ରେ 'ରାମାୟଣ'ର 'ବିଜ୍ଞାପନ' ଦିଆଗଲା ସେତେବେଳେ ଛ'ଅ କାଣ୍ଡ (ବାଳ ବା ଆଦି, ଅଯୋଧ୍ୟା, ଅରଣ୍ୟ, କିସ୍କିନ୍ଧା, ସୁନ୍ଦରା ଓ ଲଙ୍କା) ରାମାୟଣ ପ୍ରକାଶ ପାଇସାରିଥିଲା । ଦୁଃଖର କଥା ଏହି 'ବିଜ୍ଞାପନ'ରେ ଫକୀରମୋହନଙ୍କର ନାମ ସୁଦ୍ଧା ନାହିଁ । ସ୍ୱତ୍ୱ ବିକ୍ରୟ ପରେ ସମ୍ଭବତଃ ସେଥିରେ ଫକୀରମୋହନଙ୍କର ଆଉ କୌଣସି ଅଧିକାର ନାହିଁ ମନେକରି, ଏହା କରାଯାଇଥାଇପାରେ ବୋଲି ମନେହୁଏ । ସ୍ୱତ୍ୱ ବିକ୍ରୟ ପରେ ଲେଖକର 'ରୟାଲଟି' ବା ରାଜଭାଗ ଉପରେ କୌଣସି ଅଧିକାର ନାହିଁ ବା ନଥାଇପାରେ ମାତ୍ର ଲେଖକର ନାମକୁ

ଉଠାଇଦେବା କୌଣସି ପ୍ରକାଶକର ଅଧିକାରଭୁକ୍ତ ନୁହେଁ । ଏଠାରେ ଆଉଗୋଟିଏ କଥା ସ୍ମରଣ କରାଇ ଦିଆଯାଇପାରେ ଯେ 'ସମ୍ବାଦବାହିକା' ; ୧୭ / ୨୯ରେ ପ୍ରକାଶିତ 'ପୁସ୍ତକ ପ୍ରାପ୍ତି' ଅଂଶରେ ଗୋଟିଏ ସ୍ଥଳରେ ଉଲ୍ଲେଖ ଅଛି –

"ଏ ସ୍ଥଳେ ଆମ୍ଭେମାନେ ଅନରେବୁଲ କୁମାର ବୈକୁଣ୍ଠ ନାଥ ଦେ ମହାଶୟଙ୍କର ଯଥେଷ୍ଟ ପ୍ରଶଂସା କରୁଅଛୁଁ । ସେ ଆଉ ଯେତେବେଳେ ପୁସ୍ତକ ପ୍ରକାଶ କରୁଅଛନ୍ତି, ତାହା ଅଳ୍ପ କାଳସ୍ଥାୟୀ । ଶଂସିତ ରାମାୟଣକୁ ଆପଣା ପିତାଙ୍କ ନାମରେ ପ୍ରକାଶ କରାଇବା ଦ୍ୱାରା ସେ ଯେଉଁ ଯଶ ଅର୍ଜନ କରୁଅଛନ୍ତି, ତାହା ଦୀର୍ଘକାଳ ସ୍ଥାୟୀ ହେବ ।"

*(ସମ୍ବାଦବାହିକା - ୧୭ / ୨୯ - ୧୭ / ୦୭/ ୧୮୮୪, ପୃ. ୧୧୪)*

ଏଥିରୁ ସ୍ପଷ୍ଟ ପ୍ରମାଣିତ ଯେ ଫକୀରମୋହନ ସ୍ୱତ୍ୱ ବିକ୍ରୟ ପ୍ରସଙ୍ଗରେ ଶ୍ୟାମାନନ୍ଦ ଦେଙ୍କ ନାମ 'ଆତ୍ମଜୀବନୀ'ରେ ଉଲ୍ଲେଖ କରିଥିବାବେଳେ ପ୍ରକୃତରେ ବୈକୁଣ୍ଠନାଥ ଦେଙ୍କୁ ସ୍ୱତ୍ୱ ବିକ୍ରୟ କରିଥିଲେ । ସେହି ସମ୍ବାଦ ପୂର୍ବରୁ ଦିଆଯାଇଛି ।

**'ଓଡ଼ିଆ'ରେ ପ୍ରକାଶିତ 'ବିଜ୍ଞାପନ'ର ସ୍ୱରୂପ ଓ ଏହାର ସମୀକ୍ଷା –**

'ଓଡ଼ିଆ'ରେ ପ୍ରକାଶିତ 'ବିଜ୍ଞାପନ' ବାସ୍ତବରେ ପାଠକଗୋଷ୍ଠୀଙ୍କୁ ଦୁଃଖ ପ୍ରଦାନ କରିବ । ଏହାର ସ୍ୱରୂପ ନିମ୍ନରେ ପ୍ରଦର୍ଶିତ ହେଲା –

ରାମାୟଣ - ବାଳକାଣ୍ଡ (ଆଦିକାଣ୍ଡ) ଟ ଆ୦ଅଣା, ରାମାୟଣ - ଅଯୋଧ୍ୟାକାଣ୍ଡ ଟ ବାରଅଣା, ରାମାୟଣ – ଅରଣ୍ୟକାଣ୍ଡ ଟ ଆ୦ଅଣା, ରାମାୟଣ – କିଷ୍କିନ୍ଧାକାଣ୍ଡ ଟ ସାତଅଣା , ରାମାୟଣ- ସୁନ୍ଦରାକାଣ୍ଡ ଟ ଆ୦ଅଣା, ରାମାୟଣ - ଲଙ୍କାକାଣ୍ଡ (ଯନ୍ତ୍ରସ୍ଥ)

**ରାମାୟଣ**

"କବିତା ରସର ସର୍ବ ପ୍ରଥମ ଉତ୍ସ, ସରସ୍ୱତୀଙ୍କର ବରପୁତ୍ର ଆଦିକବି ବାଲ୍ମିକୀଙ୍କ କଳ୍ପନାର ଅଦ୍ଭୁତପୂର୍ବ ଉଚ୍ଛ୍ୱାସ, ବ୍ରହ୍ମାଙ୍କ ପୂର୍ଣ୍ଣାବତାର ରାମଚନ୍ଦ୍ରଙ୍କ ଲୋକାତୀତ କମନୀୟ ଚରିତ୍ର, ସତୀତ୍ୱର ଆଦର୍ଶଭୂତା ସୀତାଙ୍କ ଅସାଧାରଣ ପତୀ ପରାୟଣତା, ଭାତୃ ବତ୍ସଳ ଲକ୍ଷ୍ମଣଦେବ – ସାଧାତିରିକ୍ତ ସ୍ୱାର୍ଥତ୍ୟାଗ, ସୁଗ୍ରୀବ ଆଉ ବିଭୀଷଣଙ୍କ ଅକପଟ ମିତ୍ରତା ଏବଂ କପି ସେନାମାନଙ୍କ ଅସାଧାରଣ ପ୍ରଭୁଭକ୍ତି ଯେଉଁ ରାମାୟଣ ଗ୍ରନ୍ଥରେ ଦୃଷ୍ଟିଗୋଚର ହୁଅଇ, ଯାହା ହିନ୍ଦୁମାନଙ୍କର ଅତି ଆଦରର ଧନ, ଆଦି ଆର୍ଯ୍ୟଜାତିଙ୍କ ଗୌରବ ନିଶାଣି, ସମଗ୍ର ପୃଥିବୀସ୍ଥ ସଭ୍ୟତମ ଜାତିମାନଙ୍କର କବିତ୍ୱ ଶିକ୍ଷାର ନିଦାନଭୁକ୍ତ ; ଯାହାପାଠକଲେ ଆନନ୍ଦରସରେ ଶରୀର ଆପ୍ଲୁତ ହୁଏ, ସହାନୁଭୂତିରେ ତନ୍ମୟହେବାକୁ ହୁଏ, ସେହି ରାମାୟଣ ଗ୍ରନ୍ଥ ଏତେଦିନ ସଂସ୍କୃତ ଭାଷାରେ ଲିଖିତ ଥିବାରୁ, ସଂସ୍କୃତାନଭିଜ୍ଞ ସାଧାରଣ ବ୍ୟକ୍ତିମାନେ ତାହାର ରସାସ୍ୱାଦନରେ ବଞ୍ଚିତ ଥିଲେ ସମ୍ପ୍ରତିତାହା ଓଡ଼ିଆ ଭାଷାରେ ଅନୁବାଦିତ ହୋଇ ପ୍ରକାଶିତ ହେଉଅଛି । ଏହାର ଭାଷା ମୂଳାନୁଯାୟୀ ଅଥଚ ସରଳ ଆଉ ସୁଖବୋଧ୍ୟ, ପୁଣି ଏହା ସୁବୃହତ ହେଲେ ହେଁ ସୁଲଭ ମୂଲ୍ୟରେ ଭଲକାଗଜରେ ସୁଚାରୁ ରୂପେ ମୁଦିତ ହେଉଅଛି, ଏମନ୍ତ ଗ୍ରନ୍ଥ ଓଡ଼ିଆ ଭାଷାରେ ଏହି ପ୍ରଥମ ଶ୍ରୀଯୁକ୍ତ ରାଜା ଶ୍ୟାମାନନ୍ଦ ଦେଙ୍କ ଦ୍ୱାରା ପ୍ରକାଶିତ ହେଲା । ଆଶାକରୁଁ ହିନ୍ଦୁମାନେ ଏହି ଗ୍ରନ୍ଥପାଠକରି ଆତ୍ମାର ଚରିତାର୍ଥତା ସମ୍ପାଦନ କରିବାକୁ ଯତ୍ନବାନ ହେବ ।" *(ଓଡ଼ିଆ - ୧୨ / ୧୮୮୭, ଅତିରିକ୍ତ - ପୃ. ୨)*

୧୮୮୭ ମସିହା ବେଳକୁ 'ବିଜ୍ଞାପନ'ରେ ଫକୀରମୋହନଙ୍କର ନାମ ପ୍ରକାଶ ନ ପାଇବାର କାରଣ ସମ୍ପର୍କରେ ଗୋଟିଏ ବିଷୟ ଅବଧାରଣା କରାଯାଇପାରେ । ୧୮୬୮ ମସିହାର ଯେଉଁ ସମୟରେ 'ବାଲେଶ୍ୱରରେ ବାଳିକା ବିଦ୍ୟାଳୟ ସ୍ଥାପନ' ହେଲା ସେହି ସମୟଠାରୁ ଫକୀରମୋହନଙ୍କ ପ୍ରତି ଶ୍ୟାମାନନ୍ଦ ଦେଙ୍କର ଭଲ ଧାରଣା ନଥିଲା । ଏ ସମ୍ପର୍କରେ ଫକୀରମୋହନ ତାଙ୍କର 'ଆତ୍ମଜୀବନୀ'ରେ ଲେଖିଛନ୍ତି –

"ଉପସ୍ଥିତ ଘୋର ବିପଦରୁ ରକ୍ଷା ପାଇବା ନିମନ୍ତେ ବଡ଼ ବଡ଼ ଅମଲା ସହରର ମୁଖଣ୍ଡ ମୁଖଣ୍ଡ ଲୋକେ ଯାଇ ରାଜା ଶ୍ୟାମାନନ୍ଦ ଦେଙ୍କୁ ଧଇଲେ । ସେ ସମୟରେ ରାଜା ସାହେବ ବାଲେଶ୍ୱର ଲୋକମାନଙ୍କର ମୁରବି ତାହାଙ୍କ କଥା ଏଡ଼ିବାକୁ କାହାରି ଆୟତ୍ତ ନଥିଲା । ସନ୍ଧ୍ୟା ସମୟରେ ରାଜା ସାହେବଙ୍କ ଲୋକ ଆସି ମୋତେ ଡାକି ଘେନିଗଲା, ପନ୍ଦର କୋଡ଼ିଏ ହାତ ଦୂରରୁ ରାଜା ସାହେବଙ୍କ ମୋ ଉପରେ ଯେପରି ଦୃଷ୍ଟି ପଡ଼ିଛି, ଭୟଙ୍କର ଗର୍ଜ୍ଜନଟାଏ କରି କହିଲେ, ଆହେ ସେନାପତି ! ଭଲ କାର୍ଯ୍ୟଟାଏ କଲ, ଭଲ କାର୍ଯ୍ୟଟାଏ କଲ । ମୁଁ ହାତଯୋଡ଼ି ନମସ୍କାର କରି ଖୁବ୍ ଭକ୍ତିଭାବରେ ପଚାରିଲି "ଆଜ୍ଞା, ମୁଁ କ'ଣ କଲି ?"

ରାଜା – ତୁମ୍ଭେ ପରା ଗୋଟାଏ ମାୟୀ ସ୍କୁଲ ବସାଇଛ ?

ମୁଁ – ଆଜ୍ଞା - ଆଜ୍ଞା ।

ରାଜା – ଉଠାଓ-ଉଠାଓ-ଉଠାଓ ।

ମୁଁ – ଆଜ୍ଞା, କାରଣ କ'ଣ ।

ରାଜା – ସବୁ ତିର୍ଲା ଦୁଷ୍ଟରିତ୍ରା ହୋଇଯିବେ ।

ମୁଁ – ଆଜ୍ଞା ପାଠ ପଢ଼ିଲେ ସିନା ସଚ୍ଚରିତ୍ରା ହୁଅନ୍ତି ।

ରାଜା – ନାହିଁ-ନାହିଁ-ନାହିଁ ପ୍ରଣୟୀ ଲୋକଙ୍କୁ ଗୋପନରେ ଚିଠି ଲେଖିବେ ।

ମୁଁ – ଆଜ୍ଞା ଭାଗବତ, ରାମାୟଣ ବି ତ ପଢ଼ିବେ ।

ରାଜା ସାହେବ ଦକ୍ଷିଣ ହସ୍ତଟି ଧନୁକାକାର କରି ଭୟଙ୍କର ରୂପେ ମୁଣ୍ଡ ଝୁଙ୍କାଇ କହିଲେ, କେଭେନାଁ କେଭେନାଁ, ଉଠାଓ ସ୍କୁଲ-ଉଠାଓ ସ୍କୁଲ -ଉଠାଓ । ମୁଁ ହାତଯୋଡ଼ି ବିନୀତ ଭାବରେ ନମସ୍କାର କରି ଆଜ୍ଞା ଆଜ୍ଞା କହି "ସ୍ଥାନତ୍ୟାଗେନ......" ନୀତି ଅବଲମ୍ବନ କଲି ।

× × × ×

ଭଦ୍ରଲୋକମାନେ ଧୂମପାନ ଓ ନାନାପ୍ରକାର ଗଳ୍ପରେ ନିଯୁକ୍ତ- ଅତ୍ରତ୍ୟ ଅନ୍ୟତମ ପ୍ରଧାନ ଜମିଦାର ବାବୁ ଭଗବାନ ଚନ୍ଦ୍ର ଦାସ ହଠାତ୍ ଠିଆ ହୋଇପଡ଼ି ଖୁବ୍ ଚିହାରଟାଏ କରି କହିଲେ – "ଏହି ଘରେ ଏହି ସ୍ଥାନରେ ଫକୀରମୋହନ ବାଳିକା ସ୍କୁଲ ବସାଇଥିଲେ ବୋଲି ରାଜା ଶ୍ୟାମାନନ୍ଦ ଦେ ତାହାଙ୍କୁ ତିରସ୍କାର କରିଥିଲେ । ବର୍ତ୍ତମାନ ପୁରସ୍କାର ପାଇବା ଆଶାରେ ତିନି ଚାରିଶତ ଚାଦ୍ରୀ ଉପସ୍ଥିତ ।"

*(ଆତ୍ମଚରିତ - ଫ୍ରେଣ୍ଡସ୍ ପବ୍ଲିଶର୍ସ - ୨୦୦୩ - ପୃ. ୪୨-୪୩)*

**ରାମାୟଣ ଆରଣ୍ୟ କାଣ୍ଡ** – ୧୮୮୪ ସାଲରେ ଆରଣ୍ୟକାଣ୍ଡ ପ୍ରକାଶ ପାଇଲା । ପ୍ରକାଶକ ଥିଲେ ରାଜା ଶ୍ୟାମାନନ୍ଦ ଦେ । ଏହି କାଣ୍ଡ'ର ପ୍ରକାଶନ ସମ୍ପର୍କରେ ସମକାଳୀନ ପତ୍ର ପତ୍ରିକା'ରୁ କୌଣସି ସମ୍ବାଦ ଏ ଲେଖକ ଦୃଷ୍ଟିକି ଆସିନାହିଁ । କେବଳ ୧୮୮୭ ମସିହାରେ ଏହି ପୁସ୍ତକର ପ୍ରକାଶନ ଓ ମୂଲ୍ୟ 'ଆଠଅଣା' ବୋଲି 'ଓଡ଼ିଆ' ରୁ ଜଣାଯାଇଥାଏ । ୧୮୮୪ ସାଲରେ ଏହି କାଣ୍ଡର ପ୍ରକାଶନ ପରେ ଏକ

ସମାଲୋଚନା 'ଫସ୍କାରକ'ରେ ପ୍ରକାଶ ପାଇଥିଲା । ତେବେ ଏହି ସମାଲୋଚନାଟିରେ ରାମାୟଣର ଆଦି, ଅଯୋଧ୍ୟା ଓ ଆରଣ୍ୟ କାଣ୍ଡର ସମାଲୋଚନା କରାଯାଇଛି । 'ସମାଲୋଚନା'ଟିକୁ ନିମ୍ନରେ ପ୍ରଦାନ କରାଗଲା –

## ସମାଲୋଚନା

*(ସମାଲୋଚିତ ପୁସ୍ତକମାନ ଏହି ପତ୍ରର ମେନେଜରଙ୍କଠାରେ ଅନ୍ୱେଷଣ କଲେ ମିଳି ପାରିବ ।)*

ରାମାୟଣ, ଆଦି ଅଯୋଧ୍ୟା ଓ ଆରଣ୍ୟ କାଣ୍ଡ – ମହର୍ଷି ବାଲ୍ମୀକି କୃତ ମୂଳଗ୍ରନ୍ଥର ଅବିକଳ ପଦ୍ୟାନୁବାଦ – ଶ୍ରୀ ଫକୀରମୋହନ ସେନାପତି ପ୍ରଣୀତ – ଶ୍ରୀଯୁତ ରାଜା ଶ୍ୟାମାନନ୍ଦ ଦେଙ୍କ ଦ୍ୱାରା ପ୍ରକାଶିତ – ବାଲେଶ୍ୱର ଦେ ଙ୍କ ଯନ୍ତ୍ରରେ ମୁଦ୍ରିତ । ଫକୀରମୋହନବାବୁ ନୀଳଗିରି, ଢେଙ୍କାନାଳ ଓ ଦଶପଲ୍ଲା ମେନେଜର ବା ଦେବାନି ବୋଲି ସାଧାରଣରେ ପରିଚିତ ହେଲେହେଁ ଆମ୍ଭମାନଙ୍କଠାରେ "ଉତ୍କଳବନ୍ଧୁ" ବୋଲି ବିଶେଷରୂପରେ ଜାଣିତ । ସେହି ନାମର ବିଶେଷାର୍ଥ ଅଛି । ଯେତେବେଳେ ଉଚ୍ଚପଦାରୂଢ଼ ଓ କ୍ଷମତାବାନ୍ କେତେକ ଜଣ ଅଦୂରଦର୍ଶୀ ବଙ୍ଗଦେଶୀୟ ମିଳିତ ହୋଇ ଓଡ଼ିୟା ଭାଷାକୁ ଉଠାଇ ଦେବାକୁ ବସିଥିଲେ, ସେ ସମୟରେ ଦରିଦ୍ର ଫକୀରମୋହନ ଦେଶାନୁରାଗୀ ଗୋବିନ୍ଦ ପଟ୍ଟନାୟକଙ୍କୁ ଦକ୍ଷିଣହସ୍ତ କରି ରାମଲକ୍ଷ୍ମଣ ପ୍ରାୟ କିରୂପ ଯୁଦ୍ଧ କରିଥିଲେ, ତାହା ଏହି ମୁହୂର୍ତ୍ତରେ ବିଜୁଳି, ପ୍ରାୟ ଆମ୍ଭମାନଙ୍କ ହୃଦୟଆକାଶରେ ଝଟିକି ଚମକି ଉଠୁଅଛି । ଫକୀରମୋହନଙ୍କ ଆନ୍ଦୋଳନର ଫଳ ବର୍ତ୍ତମାନ ଜଏଣ୍ଟ ଇନସ୍‌ପେକଟର ରାଧାନାଥବାବୁ, ଯେହେତୁ ସେହି ଆନ୍ଦୋଳନରେ ଶେଷ ଅବସ୍ଥାରେ ଭୂତପୂର୍ବ ଡିପୋଟି ଇନସ୍‌ପେକ୍ଟର ଶିବଦାସ ବାବୁ ତାଡ଼ିତ ଓ ରାଧାନାଥବାବୁ ତାଙ୍କ ସ୍ଥାନରେ ନିଯୁକ୍ତ ହୋଇ ବାଙ୍କୁଡ଼ାରୁ ଆନୀତ ହେଲେ ଏବଂ ସେହିଦିନୁ ଅରଣ୍ୟ, ନଦୀ ଓ ସମୁଦ୍ରବେଷ୍ଟିତ ବାଲେଶ୍ୱରଖଣ୍ଡ ରାଧାନାଥଙ୍କ ପକ୍ଷରେ କବିତାକାନନ ହୋଇ ଉଠିଲା । ଫକୀର ଫକିରୀ ପରିତ୍ୟାଗ କରି ଦେବାନ ହେଲାରୁ ଦିନ ୨ ବିସ୍ମରଣ ହୋଇଗଲେ ଏବଂ ଆମ୍ଭେମାନେ ମଧ ଦୀର୍ଘନିଶ୍ୱାସ ପରିତ୍ୟାଗ କରି ସମୟସମୟରେ ଭାବିଥିଲୁଁ ଯେ ଫକୀର ହଜିଗଲେ ଓ ତାହାଙ୍କ କାର୍ଯ୍ୟ ଶେଷ ପାଇଲା । କିନ୍ତୁ ସିନ୍ଧୁସଦୃଶ ରାମାୟଣ ଓ ମହାସାଗରତୁଲ୍ୟ ମହାଭାରତରେ ଯେ ତାହାଙ୍କ ଚିତ୍ତ ବୁଡ଼ି ରହିଥିଲା ଏକଥା ଆମ୍ଭମାନଙ୍କୁ ଜଣା ନ ଥିଲା । ମହାଭାରତ ଓ ରାମାୟଣର ଉତ୍କଳାନୁବାଦ ତାହା ପ୍ରକାଶ କରି ଭାରତବର୍ଷ ଇତିହାସର ଅନୁବାଦକ ଓ ଅଙ୍କଶକ୍ଷାର ରଚୟିତାଙ୍କୁ ଉଚ୍ଚାସନରେ ଉପବେଶନ କରାଇଅଛି ।

ଭକ୍ତିହୀନ ହୃଦୟ ରାମାୟଣ ସଦୃଶ ଗ୍ରନ୍ଥ ଅନୁବାଦ କରି ନ ପାରେ । ସେଥିପାଇଁ ସେହି ଗ୍ରନ୍ଥର ପୂର୍ବ ପୂର୍ବ ଅନୁବାଦକମାନେ ଠାକୁରମାନଙ୍କ ଦ୍ୱାରା ପ୍ରତ୍ୟାଦିଷ୍ଟ ହୋଇ ଅନୁବାଦ କରୁଥିଲେ ବୋଲି ପ୍ରଚାର କରି ଯାଇଅଛନ୍ତି । ଫକୀରମୋହନ ଯେ ଏକାବେଳକେ ଭକ୍ତିହୀନ ଏହା କହି ନ ପାରୁଁ । ବାଲେଶ୍ୱରରେ ବ୍ରାହ୍ମସମାଜର ପ୍ରଥମ ସ୍ଥାପୟିତା ହୋଇ ଧର୍ମ୍ମପିପାସାର ଚିହ୍ନ ସେ ଦେଖାଇଅଛନ୍ତି ଏବଂ ଆମ୍ଭମାନଙ୍କର ବିଶ୍ୱାସ ଯେ ବର୍ତ୍ତମାନ ମଧ ସେ ଆପଣାକୁ ବ୍ରହ୍ମଧର୍ମର ଉପାସକ ବୋଲି ମନରେ କରନ୍ତି । ତେବେ ଅଯୋଧ୍ୟାକାଣ୍ଡ ଶେଷରେ "ହେ ଶ୍ରୀରାମ ସତ୍ୟବ୍ରତ କୌଶଲ୍ୟାନନ୍ଦନ । ଜଗତରେ ତୁମ୍ଭେ *ନରରୂପୀ ନାରାୟଣ ।।* ଫକୀରମୋହନ କରେ ଏହି ନିବେଦନ । ତୁମ୍ଭପଦେ ଚିରକାଳ ଥାଉ ମୋର ମନ ।।" (ଦ୍ୱିତୀୟପାଦତଳେ ରେଖା ଆମ୍ଭେମାନେ ଦେଇଅଛୁଁ) କିରୂପେ ଲେଖିଲେ ଆମ୍ଭେମାନେ ବୁଝିପାରୁ ନାହୁଁ । ବହୁଗୁଣବିଶିଷ୍ଟ ହେଲେ ସୁଦ୍ଧା ଶ୍ରୀରାମ ମନୁଷ୍ୟ ଥିଲେ ଏବଂ ବାଳିବଧସମୟରେ ତାହାଙ୍କର ମାନୁଷିକ

ଦୁର୍ବଳତାର ପରିଚୟ ମଳିଅଛି । ତାହାଙ୍କୁ ନରରୂପୀ-ନାରାୟଣ ବୋଲିବା ଫକୀରମୋହନମୁଖରେ ଶୋଭା ପାଉ ନାହିଁ ।

ଫକୀରମୋହନଙ୍କ ନିମ୍ନଲିଖିତ ବାକ୍ୟମାନଙ୍କରେ ଆମ୍ଭେମାନେ ଏକମତ ଅଛୁଁ – "ରାମାୟଣ ସୁଧାବାକ୍ୟ ଯେବା ଶୁଣି ନାହିଁ । ଜଗତରେ ଏକ ମହାସୁଖ ପାଇ ନାହିଁ ।। ରାଜନୀତି ଉପଦେଶ ସତ୍ୟଧର୍ମ୍ମ ନିଷ୍ଠା । ପିତୃମାତୃଭକ୍ତି ପାତିବ୍ରତ୍ୟ ପରାକାଷ୍ଠା ।। ସନ୍ତାନବାତ୍ସଲ୍ୟ ଭ୍ରାତୃସ୍ନେହ ଧର୍ମନୀତି । ଏହି ସର୍ବ ଶିକ୍ଷା ପାଇ ଅଛି ଯାର ମତି ।। ଧର୍ମ ଉପାର୍ଜ୍ଜନେ ଯେବା କରଇ ଯତନ । ବୋଲୁଅଛି ମୁହିଁ ଯାଇ ପଢୁ ରାମାୟଣ ।।" * ମାତ୍ର କେବଳ ସାରଗ୍ରାହୀ ବ୍ୟକ୍ତି ସେହୀ(ହି) ସମସ୍ତ ଉପକାର ରାମାୟଣରୁ ପାଇପାରିବେ । ନୋହିଲେ ରାମାୟଣର ସକଳକଥା ବିଶ୍ୱାସ କରି ଧର୍ମଶିକ୍ଷା କଲେ ଶେଷର ଆମ୍ଭେମାନେ କାଷ୍ଠ, ପାଷାଣ, ଭଲ୍ଲୁକ ଓ ବାନରମାନଙ୍କ ଉପାସକ ହୋଇଯିବା । ପୁଣି ତଦ୍ରୂପ ସାରଗ୍ରାହୀ ହେବା ବହୁ ଶିକ୍ଷାର ଫଳ । ବାଲ୍ୟକାଳରୁ ପଠିତ ଏବଂ ପିତାମହୀ ଓ ମାତାମହୀମାନଙ୍କଠାରୁ ଗଳ୍ପଛଳରେ ବ୍ୟାଖ୍ୟାତ ଏହି ରାମାୟଣ ଓ ମହାଭାରତରେ ଆପଣା ମନ ନ ମାନିବାରୁ ପ୍ରାୟ ୧୬ ବର୍ଷ ପୂର୍ବରେ ଫକୀରମୋହନ କଲିକତାକୁ ଯାଇ ବ୍ରାହ୍ମଧର୍ମର ବିଶୁଦ୍ଧତତ୍ତ୍ୱ ଶିକ୍ଷା କରି ଆସିଥିଲେ ଓ ସେଇ ଧର୍ମତତ୍ତ୍ୱର ପ୍ରଚାର ଓ ବ୍ୟାଖ୍ୟା ଓ ସମ୍ଭୋଗ ନିମନ୍ତେ ବାଲେଶ୍ୱରରେ ଗୋଟିଏ ବ୍ରାହ୍ମସମାଜ ବସାଇଥିଲେ; ଏବେ ସେହି ଫକୀରମୋହନ କବିକଳ୍ପନାରେ ବିହ୍ୱଳ ହୋଇ ଧର୍ମଶିକ୍ଷାର୍ଥ ଆମ୍ଭମାନଙ୍କୁ ବାନରଭଲ୍ଲୁକଚରିତପରିପୂରିତ ରାମାୟଣ ନିକଟକୁ ପଠାଉଅଛନ୍ତି । ଉଲ୍ଲିଖିତ ପଦ୍ୟମାନ ବାଲ୍ମୀକିଙ୍କ ଗ୍ରନ୍ଥରେ ଥିଲେ ଅନୁବାଦକ ଫକୀରମୋହନ ତୀବ୍ର ମନ୍ତବ୍ୟର ପାତ୍ର ହୁଅନ୍ତେ ନାହିଁ । କିନ୍ତୁ ନିଜେ ନିଜେ ଉପରେ ପଡ଼ି ଏପରି ଲେଖିବାରୁ କେବଳ ନିଜ ଦୁର୍ବଳତା ଓ ଚଞ୍ଚଳବିଶ୍ୱାସର ପରିଚୟ ଦେଇଅଛନ୍ତି । ତଥାପି ଫକୀରମୋହନଙ୍କ ସଙ୍ଗେ ଆମ୍ଭମାନଙ୍କର ଆତ୍ୟନ୍ତିକ ସହାନୁଭୂତି ଅଛି, ଏଣୁ "କେବଳ ମୁଁ ପୁତ୍ରଶୋକ ହେବାକୁ ବିସ୍ମୃତ । ଏହି ରାମାୟଣ କଲି ଉତ୍କଳରେ ଗୀତ ।।" ଏହି ପଦ୍ୟର ଭାବାର୍ଥ ଗ୍ରହଣ କରି ଆଶୀର୍ବାଦ କରୁଅଛୁଁ ଯେ ତାହାଙ୍କର ସେହି ଶୋକ ଚାଲି ଯାଉ କି ଅବା ଅନ୍ୟ ପୁତ୍ରଲାଭଜନିତ ଆନନ୍ଦରେ ପରିଣତ ହେଉ ।

ଆଲୋଚିତ ପଦ୍ୟାନୁବାଦ କେବଳ ଚଉଦ ଅକ୍ଷର ଛନ୍ଦରେ ଉଚିତ । ମଝିରେ ମଝିରେ ଅନ୍ୟାନ୍ୟ ଛନ୍ଦର ଅବତାରଣା ହୋଇଥିଲେ ଉତ୍ତମ ହୋଇଥାନ୍ତା । ଅନୁବାଦର ଭାଷା ସରଳ ଏବଂ ସାଧାରଣଙ୍କ ବୋଧଗମ୍ୟ ହୋଇଅଛି । ମାତ୍ର ଅନେକସ୍ଥଳରେ ଶେଷ ଅକ୍ଷର ଓ ଉପାଧାସ୍ୱର ନ ମିଳୁଥିବାରୁ ମିତ୍ରାକ୍ଷର ଛାନ୍ଦରେ ଦୋଷପଡ଼ିଅଛି । ସମୟାଭାବରୁ ଆମ୍ଭେମାନେ ଅନୁବାଦକୁ ଆମୂଳ ମୂଳଗ୍ରନ୍ଥର ଶ୍ଳୋକସଙ୍ଗରେ ମିଳାଇବାକୁ ଅସମର୍ଥ ହୋଇଅଛୁଁ । ତେବେ ସ୍ଥାନେ ସ୍ଥାନେ ଯାହା ଦେଖିଅଛୁଁ ସେଥିରେ ସନ୍ଦେହ ହୋଇଅଛି ଯେ ଅନୁବାଦକ ମୂଳଗ୍ରନ୍ଥର କେତେକ ଶ୍ଳୋକ ଅନୁବାଦ କରି ନାହାନ୍ତି । ଫକୀରମୋହନଙ୍କ ସଂସ୍କୃତ ଜ୍ଞାନ କେତେଦୂର ଆମ୍ଭେମାନେ କରି ନ ପାରୁଁ; ମାତ୍ର ଅନୁମାନ ହେଉଅଛି ଯେ ସେ ସଂସ୍କୃତ ଶ୍ଳୋକର ବଙ୍ଗଳା ଗଦ୍ୟଅନୁବାଦକୁ ଅବଲମ୍ବନ କରି ପଦ୍ୟରଚନା କରି ଯାଇଅଛନ୍ତି । ତଥାପି ସେହି ଗଦ୍ୟାନୁବାଦକୁ ସମ୍ପୂର୍ଣ୍ଣରୂପେ ଅବଲମ୍ବନ କରିବାକୁ ସମର୍ଥ ହୋଇନାହାନ୍ତି । ଗୋଟିଏ ଦୃଷ୍ଟାନ୍ତ ଦେଖାଉଅଛୁଁ । ଆରଣ୍ୟକାଣ୍ଡର ପଞ୍ଚସପ୍ତତିତମ ସର୍ଗରେ ଚତୁର୍ଥ ଶ୍ଳୋକର "ସପ୍ତାନାଞ୍ଚ ସମୁଦ୍ରାଣାଂ ......" ପ୍ରଭୃତିର ଅନୁବାଦ ହୋଇନାହିଁ । ସେହି ସର୍ଗର ତୃତୀୟ ଶ୍ଳୋକର "ବିଶ୍ରସ୍ତ" ଶବ୍ଦର ଅନୁବାଦ ହୋଇ ନାହିଁ । ଏପରି ଆହୁରି ଅନେକ ସ୍ଥଳ ଅଛି । ଏହି ଦୋଷ ଗୁରୁତର ଦୋଷ । ଏଣୁ ଆଲୋଚିତ ପଦ୍ୟାନୁବାଦକୁ ଆମ୍ଭେମାନେ ପୂର୍ଣ୍ଣ ଅନୁବାଦ

* ଅଯୋଧ୍ୟା କାଣ୍ଡ ଶେଷରେ ।

କହି ନ ପାରୁଁ । ଯଥାର୍ଥ ଅନୁବାଦ ପଦ୍ୟରେ ହେବା ସହଜ ନୁହେ । ଆମ୍ଭମାନଙ୍କ ବିବେଚନାରେ ଅନୁବାଦ ଗଦ୍ୟରେ ହୋଇଥିଲେ ଉତ୍ତମ ହୋଇଥାନ୍ତା ।

ବାଲ୍ମୀକିଙ୍କ କବିତା ସମ୍ବନ୍ଧରେ ରାମାନୁଜ ଲେଖିଅଛନ୍ତି "କୂଜନ୍ତଂ ରାମରାମେତି ମଧୁରଂ ମଧୁରାକ୍ଷରଂ । ଆରୂଢ଼କବିତାଶାଖଂ ବନ୍ଦେ ବାଲ୍ମୀକିକୋକିଳଂ ।।" ଅର୍ଥାତ୍ କବିତା ରୂପ ବୃକ୍ଷଶାଖାରେ ବାଲ୍ମୀକିରୂପ କୋକିଳ ମଧୁର ମଧୁର ଭାଷାରେ ରାମାୟଣ ଗାଉଅଛନ୍ତି – ମୁଁ ତାହାଙ୍କୁ ବନ୍ଦନା କରୁଅଛି । ମାତ୍ର ଫକିରମୋହନଙ୍କ ପଦ୍ୟାନୁବାଦ ପାଠ କଲେ ବୋଧ ହେବ ଯେହ୍ନେ ବାଲ୍ମୀକିକୋକିଳ ଡାମରାକାଉ ହୋଇ ଯାଇଅଛନ୍ତି । ଯେହେତୁ ସେ ଅନେକ ସ୍ଥଳରେ ମୂଳ ରାମାୟଣର କବିକଳ୍ପନା ପରିତ୍ୟାଗ କରି କଥାବାଟିଆରୂପେ ଅର୍ଥାତ୍ ଗଦ୍ୟରୂପ ପଦ୍ୟ ଲେଖିଅଛନ୍ତି, ଅଯୋଧ୍ୟାକାଣ୍ଡର ଏକୋନବିଂଶୋତ୍ତର-ଶତତମସର୍ଗର ନବମ ଶ୍ଳୋକର "ସଂପ୍ରବୃତ୍ତା ନିଶା ସୀତେ ! ନକ୍ଷତ୍ରସମଳଂକୃତା । ଜ୍ୟୋତସ୍ନାପ୍ରାବରଣଶ୍ଚନ୍ଦ୍ର ଦୃଶ୍ୟତେଽଭ୍ୟୁ-ଦିତୋଽମ୍ବରେ ।।" ଉତ୍କଳାନୁବାଦ ଏହିପରି ହୋଇଅଛି "ଆକାଶରେ ଚନ୍ଦ୍ରତାରା ହେଲେଣି ଉଦୟ" । ରେଖାଙ୍କିତ (ସମାସ ପଦ) ଦ୍ୱୟରେ ଆହା ବାଲ୍ମୀକି କେତେ କବିତା ରଖି ଯାଇଅଛନ୍ତି ! ନିଶା ନକ୍ଷତ୍ରରୂପ ଅଳଙ୍କାର ପିନ୍ଧିଅଛି –ଚନ୍ଦ୍ର ଜ୍ୟୋତ୍ସ୍ନାସ୍ୱରୂପ ଅବଗୁଣ୍ଠନ ପିନ୍ଧିଅଛି । ଫକୀରମୋହନ ଏ ସମସ୍ତ କବିତା ଉଡ଼ାଇ ଦେଇ କେବଳ ଭାବାର୍ଥ ପ୍ରକାଶ କରିଅଛନ୍ତି । ଏପରି ଗଦ୍ୟମୟ ପଦ୍ୟାନୁବାଦଠାରୁ ଗଦ୍ୟାନୁବାଦ ଭଲ । ଏହିପରି ଅନେକ ଉଦାହରଣ ଅଛି, ମାତ୍ର ସ୍ଥାନାଭାବରୁ ସେ ସମସ୍ତ ପ୍ରକାଶ କରି ପାରିଲୁଁ ନାହିଁ । ଫକୀରମୋହନଙ୍କ ପୂର୍ବବର୍ତ୍ତୀ ଅନୁବାଦକମାନେ ମୂଳଗ୍ରନ୍ଥରୁ ଅନେକ ଦୂରକୁ ଚାଲି ଯାଇଥିଲେ ସତ, ମାତ୍ର ସେମାନେ ନିଜ ନିଜ କଳ୍ପନାଦ୍ୱାରା ସୁନ୍ଦର ସୁନ୍ଦର କବିତା ରଚନା କରି ଯାଇଥିଲେ । ଏଣୁ ସେମାନଙ୍କ ଗ୍ରନ୍ଥ ପାଠ କଲେ କାବ୍ୟ ପଢ଼ିଲା ପ୍ରାୟ ବୋଧ ହୁଏ; ମାତ୍ର ଫକୀରମୋହନଙ୍କ ପଦ୍ୟାନୁବାଦ ପାଠ କଲେ ବୋଧ ହେବ ଯେହ୍ନେ ଆମ୍ଭେମାନେ ଗୋଟିଏ ଗଦ୍ୟମୟ ଇତିହାସ ପାଠ କରୁଅଛୁଁ ।

ରାଜା ଶ୍ୟାମାନନ୍ଦ ବହୁପ୍ରକାରେ ଆମ୍ଭମାନଙ୍କ କୃତଜ୍ଞତାଭାଜନ ହୋଇଅଛନ୍ତି । ବୃଦ୍ଧବୟସରେ ରାମାୟଣମହାଭାରତବିବୃତ ରାମକୃଷ୍ଣ ଚରିତ ଅନୁଶୀଳନ କରିବା ହିନ୍ଦୁଧର୍ମର ଆଦେଶ । ସେ ତାହା ପାଳନ କରିବାରୁ ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦିତ ହୋଇଅଛୁଁ । ଉଲ୍ଲିଖିତ ମନ୍ତବ୍ୟମାନ ପ୍ରକାଶ କରି ତାହାଙ୍କୁ ନିରୁତ୍ସାହୀ କରିବା ଆମ୍ଭମାନଙ୍କ ଉଦ୍ଦେଶ୍ୟ ନୁହେଁ । କେବଳ ଭବିଷ୍ୟତ ଚାରିକାଣ୍ଡରେ ମନ୍ତବ୍ୟଲିଖିତ ଅଭାବମାନ ପୂର୍ଣ୍ଣ ହେବ – ଏହି ଆଶାରେ ଆମ୍ଭେମାନେ ତାହା ଲେଖିଅଛୁଁ । ଏହି ଉତ୍କଳପଦ୍ୟାନୁବାଦ ଛପାଇବାରେ, ଅନୁମାନ ହେଉଅଛି, ବହୁ ଅର୍ଥବ୍ୟୟ ହୋଇଥିବ । ଏଣୁ ଆଶା କରୁଁ ଉତ୍କଳୀୟ ପାଠକମାନେ ଏଥିରୁ ଖଣ୍ଡେ ଖଣ୍ଡେ କ୍ରୟ କରି ଆପଣା ଆପଣା ଘରେ ରଖିବେ, ଯେହେତୁ ଆଜି ପର୍ଯ୍ୟନ୍ତ ଓଡ଼ିଆରେ ଯେତେ ଅନୁବାଦ ବାହାରି ଅଛି ସମସ୍ତଙ୍କଠାରୁ ଫକୀରମୋହନଙ୍କ ଅନୁବାଦ ଶ୍ରେଷ୍ଠ ଅଟେ । ଏପରି ଅନୁବାଦ ପ୍ରତି ଓଡ଼ିଆ ଘରେ ରହିବା ଉଚିତ୍ । ଶିକ୍ଷାବିଭାଗକୁ ମଧ୍ୟ ଅନୁରୋଧ କରୁଅଛୁଁ ଯେ ପ୍ରତ୍ୟେକ ମଧ୍ୟମଶ୍ରେଣୀୟ ବିଦ୍ୟାଳୟର ସମ୍ପାଦକଙ୍କୁ ଏହି ଗ୍ରନ୍ଥରୁ ଖଣ୍ଡେ ଲେଖାଁଏ କ୍ରୟ କରିବାକୁ ଅନୁରୋଧ କରିବେ, ଯେହେତୁ ରାମାୟଣ ସଦା ବ୍ୟବହାର୍ଯ୍ୟ ପୁସ୍ତକ ।

*(ସଂସ୍କାରକ - ସେପ୍ଟେମ୍ବର - ୧୮୮୪ ପୃ. ୫-୭)*

*ଖ୍ରୀଷ୍ଟିୟାନ୍ ସାହି, ସୁତାହାଟ*
*କଟକ - ୭୫୩୦୦୧*

●

# ସ୍ୱଦେଶ ସ୍ୱପ୍ନ'ର ସମାଲୋଚନା ଓ ଫକୀରମୋହନ

## (ଫକୀରମୋହନଙ୍କର ଏକ ଅସଂଗୃହୀତ ରଚନା)

*– ରଞ୍ଜନ କୁମାର ପଣ୍ଡା*

"ସର୍ବଗୁଣାକର ପ୍ରଭୁ, କରୁଣା ସାଗର,
ଅଖିଳ-ଭୁବନ-ସ୍ୱାମୀ, ଜଗତକରତା,
ଅଗଣିତ ଜୀବରାଶି ଯାହାଙ୍କ ଇଚ୍ଛାରେ
ଜନ୍ମ-ମୃତ୍ୟୁ-ଅନୁଗାମୀ, ଯାର କୃପା-ବଳେ
କୋଟିଜନ୍ମପାପରାଶି ହେଲେ ଯାଏ ନାଶ ।"

ଏହି କବିତାଂଶଟି ପଣ୍ଡିତ ଶ୍ରୀବିଶ୍ୱନାଥ ରଥ କାବ୍ୟତୀର୍ଥ ବିରଚିତ 'ସ୍ୱଦେଶ ସ୍ୱପ୍ନ' ପୁସ୍ତକରୁ ଗୃହୀତ । ଏହି ପୁସ୍ତକଟି କଟକ ସମ୍ମିଳନୀ ପ୍ରେସ୍‌ରେ ୧୯୦୭ ସାଲରେ ମୁଦ୍ରିତ । ମୂଲ୍ୟ ତିନି ପଇସା । ତାଳଚେରାଧୀଶ୍ୱର ଶ୍ରୀ କିଶୋରଚନ୍ଦ୍ର ବୀରବର ହରିଚନ୍ଦନ ମହୋଦୟଙ୍କ ଆନୁକୂଲ୍ୟରେ ପ୍ରକାଶିତ । 'ଉତ୍ସର୍ଗପତ୍ର'ରେ କବି ଲେଖିଛନ୍ତି –

"ନିଖିଳ ଗୁଣନିଧାନ ଶ୍ରୀଳ ଶ୍ରୀଯୁକ୍ତ ତାଳଚେରାଧିପତି
ଶ୍ରୀ କିଶୋରଚନ୍ଦ୍ର ବୀରବର ହରିଚନ୍ଦନ ମହୋଦୟ କରକମଳେଷୁ ।
ସବିନୟ ନିବେଦନମିଦଂ ।

ମହାରାଜ,

ଦିଗନ୍ତ ପ୍ରସାରିତ ଭବଦୀୟ ବିବିଧ ଯଶଃ-ସୌରଭରେ ଆକୃଷ୍ଟ ହୋଇ ଶ୍ରୀଛାମୁଙ୍କ କରକମଳରେ ଯତ୍କିଞ୍ଚିତ ଭକ୍ତି ଉପହାର ଦେବା ନିମିତ୍ତ ବହୁକାଳରୁ ଇଚ୍ଛା କରିଥିଲି; କିନ୍ତୁ ନାନା ଅସୁବିଧା ହେତୁଁ ତାହା ଚରିତାର୍ଥ ହୋଇ ନଥିଲା । ବିଶେଷତଃ ସ୍ୱଦେଶ ପ୍ରତି ଛାମୁଙ୍କର ଅକୃତ୍ରିମ ଓ ନିସ୍ୱାର୍ଥ ମମତା ଦେଖି ବର୍ତ୍ତମାନ ଶ୍ରୀଛାମୁଙ୍କ କର କମଳରେ "ସ୍ୱଦେଶ ସ୍ୱପ୍ନ" ନାମକ ଏହି କ୍ଷୁଦ୍ର ପୁସ୍ତକ ଖଣ୍ଡିକ ଭକ୍ତି ସହ ସମର୍ପଣ କଲି । ଏହା ମହାରାଜଙ୍କର ଯୋଗ୍ୟ ଉପହାର ନ ହେଲେ ମଧ ଶ୍ରୀଛାମୁ ନିଜଗୁଣରେ ଗ୍ରହଣ କଲେ କୃତାର୍ଥ ହେବି ।"

*(ସ୍ୱଦେଶ ସ୍ୱପ୍ନ - ଉତ୍ସର୍ଗ ପତ୍ର)*

ସମସାମୟିକ ଦୁଇ ବିଶିଷ୍ଟ କବି ରାଧାନାଥ ରାୟ ଏବଂ ମଧୁସୁଦନ ରାଓ ଏପୁସ୍ତକ ସମ୍ପର୍କରେ ନିଜ ନିଜର ଅଭିମତ ଦେଇଛନ୍ତି । –

**କବିବର ରାଧାନାଥ ରାୟଙ୍କର ଅଭିମତ** – ପୁସ୍ତକର ପ୍ରଥମରେ ରାଧାନାଥଙ୍କର ଅଭିମତ ରହିଛି । –

"ପ୍ରଥମ ଉଦ୍ୟମରେ କବି ଯେପରି ଶକ୍ତିମତାର ପରିଚୟ ଦେଇଅଛନ୍ତି ତାହା ସମ୍ପୂର୍ଣ୍ଣ ଆଶାପ୍ରଦ ଏବଂ ପ୍ରୀତିକର । ଏହାଙ୍କର ସଂସ୍କୃତ କାବ୍ୟ ମୁଁ ପୂର୍ବେ ପାଠକରି ପ୍ରୀତ ହୋଇଥିଲି, ଓଡ଼ିଆ କାବ୍ୟ ପାଠ କରି ତତୋଽଧିକ ପ୍ରୀତ ହେଲି । ଅଧବେସାୟ ସହିତ ଲେଖିଲେ ଓଡ଼ିଆ ସାହିତ୍ୟ ଜଗତରେ ଏ ମହାଶୟ ସ୍ଥାୟି କୀର୍ତ୍ତି ସଂସ୍ଥାପନ କରିପାରିବେ । ପ୍ରାଞ୍ଜଳତା ଏହାଙ୍କ ରଚନାର ଗୋଟିଏ ବିଶେଷଗୁଣ । ଏ ସଦ୍‌ଗୁଣ

ଅଧିକାଂଶ ଅମିତ୍ରାକ୍ଷର ଲେଖକଙ୍କ ରଚନାରେ ପ୍ରାୟ ଦେଖାଯାଏ ନାହିଁ । କାବ୍ୟର ଶେଷାଂଶ ସୁନୀତିଗର୍ଭକ ହୋଇଥିବାରୁ ତଦ୍ୱାରା ସେଥିର ଉପାଦେୟତା ବହୁପରିମାଣରେ ପରିବର୍ଦ୍ଧିତ ହୋଇଅଛି ।"

*(ସ୍ୱଦେଶ ସ୍ୱପ୍ନ-କବିବର ରାଧାନାଥ ରାୟ ବାହାଦୂର ମହୋଦୟଙ୍କର ପୁସ୍ତକ ସମ୍ବନ୍ଧରେ ଅଭିମତ-ଲିଖନର ସମୟ – ୧୫.୮.୧୯୦୭)*

ମଧୁସୁଦନ ରାଓଙ୍କର ଅଭିମତ – ରାଧାନାଥଙ୍କ ମତପରେ ମଧୁସୂଦନଙ୍କର 'ଅଭିମତ' ପ୍ରକାଶ ପାଇଛି । ତାଙ୍କ ମତରେ –

"ଉତ୍କଳ ସାହିତ୍ୟ-ସଂସାରରେ ନବୀନ ସୁକବି ଓ ସୁଲେଖକଙ୍କର ଆବିର୍ଭାବ ଦର୍ଶନ କରି ମୁଁ ସମୟେ ସମୟେ ସେମାନଙ୍କୁ ସ୍ୱାଗତ-ସମ୍ଭାଷଣ ସହ ବରଣ କରିବାର ପବିତ୍ର ଅଧିକାର ପାଇଅଛି । ମୋ ନିକଟରେ ଆଜି ପୁଣି ସେହି ସୁଯୋଗ ଉପସ୍ଥିତ ହୋଇଅଛି ଏବଂ ମୁଁ ହୃଦୟର ଆନନ୍ଦରେ ତରୁଣ କବି ଶ୍ରୀଯୁକ୍ତ ପଣ୍ଡିତ ବିଶ୍ୱନାଥ ରଥ ମହୋଦୟଙ୍କୁ ମୋର ହୃଦୟର ସ୍ୱାଗତ-ବାଣୀ ଜଣାଉଅଛି । ତାଙ୍କ ରଚିତ 'ସ୍ୱଦେଶ ସ୍ୱପ୍ନ' ନାମକ କାବ୍ୟଗ୍ରନ୍ଥ ଖଣ୍ଡି ଭାବ ଓ ଭାଷା ଉଭୟଥା ସ୍ଥଳରେ ଉପାଦେୟ ଓ ସମାଦରଣୀୟ ହୋଇଅଛି । ବର୍ତ୍ତମାନ ଉତ୍କଳର ଦୁର୍ଗତି-ଦର୍ଶନ-ଜନିତ ଦୁଃଖ ଓ ଭାବି ଉତ୍କଳର କଲ୍ୟାଣୋଜ୍ଜ୍ୱଳ ମହିମାର ଦର୍ଶନରେ ଆନନ୍ଦ ଓ ଆଶା କାବ୍ୟ ଖଣ୍ଡିକର ବିଷୟ ଅଟେ । ବିଷୟଟି ନୂତନ ନୁହେଁ, କିନ୍ତୁ ନବ କବି ତାହାକୁ ତାଙ୍କ ସଜୀବଭାବନିଚୟଦ୍ୱାରା ନବସୌନ୍ଦର୍ଯ୍ୟ ମଣ୍ଡିତ କରିବାରେ ସମଗ୍ରପ୍ରାଣର ଐକାନ୍ତିକ ପ୍ରୟାସ ଢାଳି ଦେଇଅଛନ୍ତି । କାବ୍ୟ ଖଣ୍ଡିଯେ ଭାବ ବା ଭାଷା ବିଷୟରେ ସର୍ବାଙ୍ଗ ସୁନ୍ଦର ହୋଇଅଛି, ତାହା ମୁଁ କହୁ ନାହିଁ, କିନ୍ତୁ ମୁଁ ମୁକ୍ତକଣ୍ଠରେ କହିପାରେ ଯେ ତାଙ୍କ ରଚନା ନିଃସନ୍ଦେହରୂପେ ଉଚ୍ଚମର୍ଯ୍ୟାଦାପ୍ରାପ୍ତିର ଉପଯୁକ୍ତ ହୋଇଅଛି । ଆଶାକରେ ତାହା ପାଠକ-ସମାଜ ନିକଟରେ ଯଥୋଚିତ ସମାଦର ଲାଭ କରିବ ।"

*(ସ୍ୱଦେଶ ସ୍ୱପ୍ନ-ଶ୍ରୀଯୁକ୍ତ ରାୟ ମଧୁସୂଦନ ରାଓ ବାହାଦୂର ମହୋଦୟଙ୍କର ପୁସ୍ତକ ସମ୍ବନ୍ଧରେ ଅଭିମତ-ଲିଖନର ସମୟ ୨୫-୦୮-୧୯୦୭)*

ଏହି ଦୁଇଟି ଅଭିମତ 'ସ୍ୱଦେଶ ସ୍ୱପ୍ନ' ପୁସ୍ତକରେ ହିଁ ମୁଦ୍ରିତ ହୋଇଅଛି । କିନ୍ତୁ 'ବାଲେଶ୍ୱର ସମ୍ବାଦବାହିକା'ର ୨୩/୦୧/୧୯୦୮ରେ 'ସ୍ୱଦେଶ ସ୍ୱପ୍ନ' କାବ୍ୟଟିର ଏକ ସମାଲୋଚନା ପ୍ରକାଶ ପାଇଛି ଯାହାକୁ ଆମ୍ଭେ ଫକୀରମୋହନଙ୍କର ବୋଲି ଗ୍ରହଣ କରିନେଇଛୁ । ଏହା ଶେଷରେ 'ଜଣେ ବାହିକା ପାଠକ' ବୋଲି ଲେଖାଅଛି । କାହିଁକି ଏହା ଫକୀରମୋହନଙ୍କର ବୋଲି ଆମେ ଗ୍ରହଣ କରିଛୁ ତାହା ନିମ୍ନରେ ଉଲ୍ଲେଖ କରିଛୁ । ସେହି ଗୋଟିଏ ପ୍ରମାଣ ଛାଡ଼ିଦେଲେ ଉକ୍ତ ସମାଲୋଚନାଟି ଯେ ଫକୀରମୋହନଙ୍କର ତାହା କହିବାର ଅନ୍ୟକୌଣସି ସୂତ୍ର ନାହିଁ ।

**ଫକୀରମୋହନଙ୍କର ବୋଲି ପ୍ରମାଣ କ'ଣ ? –** ପୂର୍ବରୁ କୁହାଯାଇଛି, ଯେ ଏହା ଫକୀରମୋହନଙ୍କ ବୋଲି ଗୋଟିଏ ମାତ୍ର ପ୍ରମାଣ ରହିଛି । ଫକୀରମୋହନ କଟକ ଆଲୋଚନା ସଭାର ଚତୁର୍ଥ ବାର୍ଷିକ ଅଧିବେଶନରେ ଏକ ଅଭିଭାଷଣ ପ୍ରଦାନ କରିଥିଲେ । ସେଥିରେ ଗୋଟିଏ ସ୍ଥାନରେ ଏକ ଘଟଣାରେ ବର୍ଣ୍ଣନା କରି ବକ୍ତା କହିଛନ୍ତି –

"କଟକ କଲେଜର ଭୂତପୂର୍ବ ପ୍ରିନ୍ସପାଲ ସ୍ୱର୍ଗୀୟ ନୀଳକଣ୍ଠ ମଜୁମଦାରଙ୍କ ସହିତ ମୋର ବିଶେଷ ସଦ୍ଭାବ ଥିବାରୁ ମୁଁ ସଚରାଚର ତାହାଙ୍କ ବସାକୁ ଯାଉଥିଲି, ଦେଖେଁ ତାହାଙ୍କ ଘରେ ରାଶିକୃତ ବଙ୍ଗଳା ପୁସ୍ତକ ସଞ୍ଚିତ । ନୂତନ ପୁସ୍ତକ ପ୍ରଚାରମାତ୍ରେ ସେ ଖଣ୍ଡେ ଖଣ୍ଡେ କିଣିଥାନ୍ତି । ମୁଁ ଦିନେ ପଚାରିଲି ଆପଣଙ୍କୁ ତ କେବେ ବଙ୍ଗଳା ପୁସ୍ତକ ପଢ଼ିବାର ଦେଖାଯାଏ ନାହିଁ,ତେବେ କି ସକାଶେ କିଣିଥାନ୍ତି ମୋ ପ୍ରଶ୍ନର ସେ ଠିକ୍ ଉତ୍ତର ଦେଇଥିଲେ –

ଆମର ମାତୃଭାଷାର ପୁସ୍ତକ ମୁଁ ଯଦି ନ କିଣେ ତେବେ ଅନ୍ୟମାନେ କାହିଁକି କିଣିବେ । ତାହେଲେ ମାତୃଭାଷାର ଉନ୍ନତି ହେବନାହିଁ । ଆପଣଙ୍କ ଦେଶର ଲୋକମାନେ ତାହା ବୁଝନ୍ତି ନାହିଁ । ତେଣୁ ଓଡ଼ିଆ ଭାଷାର ଏତେ ଅବନତି ।" *(ସାରସ୍ୱତ ପରିକ୍ରମା-ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ-୧୯୯୩ - ପୃ. ଜ)*

'ସ୍ୱଦେଶ ସ୍ୱପ୍ନ' କାବ୍ୟ ସମାଲୋଚନା'ର ଏକ ସ୍ଥାନରେ ଲେଖାଅଛି –

"କଟକ ରେଭେନ୍‌ସା କଲେଜର ଭୂତପୂର୍ବ୍ବ ପ୍ରିନ୍‌ସିପାଲ ୰ ନୀଳକଣ୍ଠ ମଜୁମଦାର ମହାଶୟ ବଙ୍ଗଭାଷାରେ ନୂତନ ପୁସ୍ତକ ବାହାରିବାମାତ୍ର ଖଣ୍ଡିଏ ଖଣ୍ଡିଏ କିଣି ଘରେ ରଖି ଥାଆନ୍ତି, ମାତ୍ର ସେସମସ୍ତ ପଢ଼ିବାକୁ ପ୍ରାୟ ତାହାଙ୍କର ଅବକାଶ ଥାଏ ନାହିଁ । ମୁଁ ଦିନେ ତାହାଙ୍କୁ ପଚାରିଲି ଆପଣତ ପଢ଼ନ୍ତି ନାହିଁ କି ସକାଶ ପୁସ୍ତକ କିଣି ଘରେ ରଖନ୍ତି ? ମଜୁମଦାର ମହାଶୟ ଉତ୍ତର ଦେଲେ – "ଆମ୍ଭେମାନେ ନ କିଣିଲେ କିଏ କିସକାଶ ପୁସ୍ତକ ଛପାଇବ ? ଭାଷାର ଉନ୍ନତି କିପରି ହେବ ? ଆପଣଙ୍କ ଦେଶର ଓଡ଼ିଆମାନେ ଏକଥା ବୁଝନ୍ତି ନାହିଁ, ଏଥିସକାଶ ନୂତନ ୨ ଗ୍ରନ୍ଥ ବାହାରୁ ନାହିଁ, ସୁତରାଂ ଭାଷାର ଉନ୍ନତି ହେଉନାହିଁ ।" ମଜୁମଦାର ମହାଶୟଙ୍କ ପ୍ରକୃତ କଥା ଶୁଣି ମୁ ନୀରବ ହେଲି; ମନରେ ବିଚାରିଲି ଆଉ କେତେଦିନେ ଶିକ୍ଷିତ ଉତ୍କଳିମାନେ ଏକଥା ବୁଝିବେ ?" *(ବାଲେଶ୍ୱର ସମ୍ବାଦବାହିକା - ୨୩/ ୧/ ୧୯୦୮)*

ଏଥର ପ୍ରିୟ ପାଠକଗଣ ଜାଣିସାରିବେଣିଯେ ଏହା ନିଶ୍ଚୟ ଫକୀରମୋହନଙ୍କର । ଯେହେତୁ ଏହି ସମାଲୋଚନାର ପୂର୍ବ୍ବରୁ ଫକୀରମୋହନଙ୍କର ଖଣ୍ଡିଏ ପତ୍ର ତାଙ୍କରି ନାମରେ (୧୯/୦୧/୦୮) ପ୍ରକାଶ ପାଇଛି, ବୋଧହୁଏ ସେଥିପାଇଁ ପରବର୍ତ୍ତୀ ଲେଖାଟିରେ ଫକୀରମୋହନଙ୍କର ନାମଦେବା ସମ୍ପାଦକ ଉଚିତ୍ ମଣିନାହାନ୍ତି; ବା ସମାଲୋଚନାଟିର ଲେଖକ ନିଜେ ନିଜର ନାମ ଦେଇନାହାନ୍ତି । ନିମ୍ନରେ ସମାଲୋଚନାଟି ପ୍ରଦତ୍ତ ହେଲା –

ମାନ୍ୟବର ଶ୍ରୀଲ ଶ୍ରୀଯୁକ୍ତ ସମ୍ବାଦବାହିକା ସମ୍ପାଦକ

ମହାଶୟ ସମୀପେଷୁ ।

ମହାଶୟ, କୃପାକରି ନିମ୍ନଲିଖିତ ବିଷୟଟି ଆପଣଙ୍କ ପତ୍ରିକାରେ ପ୍ରକାଶ କରି ଅନୁଗୃହୀତ କରାଇବେ ।

## ସ୍ୱଦେଶ ସ୍ୱପ୍ନ କାବ୍ୟ ।

ଗ୍ରନ୍ଥାକାର ପଣ୍ଡିତ ବିଶ୍ୱନାଥ ରଥ କାବ୍ୟତୀର୍ଥ; ମୂଲ୍ୟ ତିନି ଅଣା । ମାତୃଭାଷାପ୍ରିୟ କୌଣସି ବନ୍ଧୁଙ୍କଠାରୁ ଉଲ୍ଲିଖିତ କାବ୍ୟ ଖଣ୍ଡିକ ପ୍ରାପ୍ତ ହୋଇ ନିତାନ୍ତ ଆଗ୍ରହ ସହିତ ଦୁଇଥର ଆମୂଳ ପାଠ କଲି । ଦେଖିଲି ଲେଖାରେ ଏମନ୍ତ ଗୋଟିଏ ମୋହିନୀ ଶକ୍ତି ଅଛି, ପାଠ ଆରମ୍ଭ କଲେ ଶେଷ ପର୍ଯ୍ୟନ୍ତ ନପଢ଼ି ଗ୍ରନ୍ଥ ପରିତ୍ୟାଗ କରିବାକୁ ମନବଳେ ନାହିଁ । ଆଜି ପର୍ଯ୍ୟନ୍ତ ଏପରି ଉପାଦେୟ ଗ୍ରନ୍ଥ ଖଣ୍ଡିକ ମୋ ହସ୍ତଗତ ହୋଇ ନଥିଲା ବୋଲି ଦୁଃଖିତ ଥିଲି । ତାଳଚେର ଦୁର୍ଗର କିଶୋର ନୃପତି ଶ୍ରୀ କିଶୋର ବୀରବର ହରିଚନ୍ଦନ ଏହାର ପ୍ରକାଶକ । ରାଜା ମହୋଦୟ ଜଣେ ସ୍ୱଦେଶ ବତ୍ସଳ ଓ ମାତୃଭାଷାର ଉନ୍ନତିକାମୀ ବୋଲି ନାନା କାରଣରୁ ମୋହର ଧାରଣା ଥିଲା, ଉପସ୍ଥିତ ବିଷୟଟି ସେଥିର ଅନ୍ୟତମ ପ୍ରମାଣ ଏବଂ ତାହାଙ୍କର ଏହା ପୈତୃକ ପ୍ରବୃତ୍ତି ଅଟେ । ଉତ୍କଳର କେତେରାଜା, ମହାରାଜା କାଳସ୍ରୋତରେ ଭାଷି ଗଲେଣି, ଯିବେ । ଅକ୍ଷର କିର୍ତ୍ତୀ-ଅକ୍ଷର କିର୍ତ୍ତୀ । ଆମ୍ଭମାନଙ୍କ କିଶୋର ନୃପତି ମାତୃଭାଷାର ଉନ୍ନତି କଳ୍ପେ ଯତ୍ନ କରି କେବଳ ଯେ ମହାପୁଣ୍ୟ ଅର୍ଜ୍ଜନ କରୁଅଛନ୍ତି ତାହା ନୁହେଁ, ତାହାଙ୍କର କୀର୍ତ୍ତି ଅକ୍ଷର ଅର୍ଥାତ୍ ଚିରସ୍ଥାୟିନୀ ହୋଇ ରହିବ, ସ୍ୱଦେଶ ସ୍ୱପ୍ନ କାବ୍ୟ ଖଣ୍ଡିକ ଅମିତ୍ରାକ୍ଷର ଛନ୍ଦରେ ଲିଖିତ; ମହାଯାତ୍ରା ବା

ଅଭିମନ୍ୟୁ ବଧ ଅମିତ୍ରାକ୍ଷର ଛନ୍ଦରେ କାବ୍ୟଯୁଗଳ କାବ୍ୟାଂଶେ ସମାଲୋଚ୍ୟ କାବ୍ୟଠାରୁ ନିଃସନ୍ଦେହରେ ଉଚ୍ଚାସନ ପାଇବାର ଯୋଗ୍ୟ, ମାତ୍ର ଅନ୍ୟ ଦୁଇଗୋଟି ଗୁଣରେ ଏହି କାବ୍ୟ ଖଣ୍ଡିକ ଉଲ୍ଲିଖିତ କାବ୍ୟ ଯୁଗଳକୁ ନିଶ୍ଚୟ ଅତିକ୍ରମ କରିଅଛି ବୋଲି ମୋହର ବିଶ୍ୱାସ ।

ପ୍ରଥମତଃ ସ୍ୱଦେଶ ସ୍ୱପ୍ନ କାବ୍ୟ ଖଣ୍ଡିକ ମୌଳିକ ଚିନ୍ତାପ୍ରସୂତ ଏବଂ ଚିତ୍ରଗୁଡ଼ିକ ଦୋଷବର୍ଜିତ ।

୨ୟତଃ – ଅନ୍ୟକାବ୍ୟକାରମାନେ ଅମିତ୍ରାକ୍ଷର ଛନ୍ଦ ଅନୁକରଣ କରିବାକୁ ଯାଇ ମାଇକେଲଙ୍କ ପଦବିନ୍ୟାସ ପ୍ରଣାଳୀକୁ ମଧ ଅନେକ ସ୍ଥଳରେ ଅନୁକରଣ କରି ପକାଇଅଛନ୍ତି, ପ୍ରତିଭାଶାଳୀ ଲୋକମାନଙ୍କ ଲେଖା ବୋଲି ଯାହାହେଉ, ମାତ୍ର ଯେ ସେ ଲୋକ ଏପ୍ରଣାଳୀ ଅବଲମ୍ବନ କରିଥିଲେ ନିଶ୍ଚୟ ମାଗିଅଣା ପରି ଅପାଠ୍ୟ ହୋଇ ପଡ଼ିଥାଆନ୍ତା । ସ୍ୱଦେଶ ସ୍ୱପ୍ନ ସମ୍ପୂର୍ଣ୍ଣରୂପେ ଉତ୍କଳୀ ରୀତିରେ ଲିଖିତ, ଏହାର ଭାଷା ପ୍ରାଞ୍ଜଳ, ନିର୍ଦ୍ଦୋଷ ଓ ଅର୍ଥ ଗୌରବଶାଳୀ । ଏହି ପୁସ୍ତକ ଖଣ୍ଡିକ ପାଠ କରିବା ସକାଶ ପ୍ରତ୍ୟେକ ଶିକ୍ଷିତ ଲୋକଙ୍କୁ ଅନୁରୋଧ କରେ । ଆଉ ପିଲାମାନେ ଯେମନ୍ତ ବାଲ୍ୟକାଳରୁ ସ୍ୱଦେଶ ବିଷୟ ଚିନ୍ତା କରିବାକୁ ସୁଯୋଗ ପାଇବେ ସେଥି ନିମିତ୍ତ ଘରେଘରେ ଏହି ପୁସ୍ତକ ଖଣ୍ଡିଏ ୨ ରହିବା ଆବଶ୍ୟକ । ଦୁଃଖର ବିଷୟ, ମାତୃଭାଷାରେ ନୂତନ ଗ୍ରନ୍ଥ ବାହାରିଲେ ଖଣ୍ଡିଏ ଖଣ୍ଡିଏ କିଣି ଆଣି ପଢ଼ିବାକୁ ଅଥବା ପିଲାମାନଙ୍କ ପାଠ ସକାଶ ଖଣ୍ଡିଏ ଖଣ୍ଡିଏ ଘରେ ରଖିବାକୁ ହୁଏ, ଏକଥା ଶିକ୍ଷିତ ଉତ୍କଳିମାନେ ବୁଝିଲେ ନାହିଁ । ଉତ୍କଳରେ କି କେହି ପୁସ୍ତକ କ୍ରେତା ନାହାନ୍ତି ? ଅଛନ୍ତି –ଭୂତକେଳି, କପଟପାଶା ବିକ୍ରି ହୁଏ । ନାଟୁଚୋରୀ, ବହୁସୁଆଙ୍ଗର କ୍ରେତା ମଧ ଅଭାବ ନାହିଁ, ମାତ୍ର ଭଲ ପୁସ୍ତକର କ୍ରେତା କେତେଜଣ ? ରାଧାନାଥ ଗ୍ରନ୍ଥାବଳୀ କେତେଜଣ ଶିକ୍ଷିତ ଲୋକଙ୍କ ଘରୁ ବାହାରିବ ? ମହାଯାତ୍ରା ଅଭିମନ୍ୟୁ କେତେଜଣ ପଢ଼ି ଥାଆନ୍ତି ? ବଙ୍ଗଭାଷାରେ ସ୍ୱଦେଶସ୍ୱପ୍ନ ବାହାରି ଥିଲେ ଆଜି ୩ ସଂସ୍କରଣ ହୋଇ ଯାଇ ଥାଆନ୍ତା । ଲେଖକ ଭଲରୂପେ ଜାଣନ୍ତି, ଅନେକ ଶିକ୍ଷିତ ବଙ୍ଗବାସୀ ଇଚ୍ଛାପୂର୍ବକ ବା ସମୟାଭାବ ପ୍ରଯୁକ୍ତ ବଙ୍ଗଳା ପୁସ୍ତକ ପଢ଼ନ୍ତି ନାହିଁ, ମାତ୍ର ମାତୃଭାଷାରେ ଖଣ୍ଡିଏ ନୂତନ ପୁସ୍ତକ ବାହାରିଲେ ତାହା କ୍ରୟ କରି ଘରେ ରଖି ଥାଆନ୍ତି । ଦୃଷ୍ଟାନ୍ତ ସ୍ଥଳରେ ମୁଁ ଏଭଳି କେବଳ ଗୋଟିଏ ଲୋକର ନାମ ଉଲ୍ଲେଖ କରୁଅଛି । କଟକ ରେଭେନ୍‌ସା କଲେଜର ଭୂତପୂର୍ବ୍ବ ପ୍ରିନ୍‌ସିପାଲ ୰ ନୀଳକଣ୍ଠ ମଜୁମଦାର ମହାଶୟ ବଙ୍ଗଭାଷାରେ ନୂତନ ପୁସ୍ତକ ବାହାରିବା ମାତ୍ର ଖଣ୍ଡିଏ ଖଣ୍ଡିଏ କିଣି ଘରେ ରଖି ଥାଆନ୍ତି, ମାତ୍ର ସେସମସ୍ତ ପଢ଼ିବାକୁ ପ୍ରାୟ ତାହାଙ୍କର ଅବକାଶ ଥାଏ ନାହିଁ । ମୁଁ ଦିନେ ତାହାଙ୍କୁ ପଚାରିଲି ଆପଣତ ପଢ଼ନ୍ତି ନାହିଁ କି ସକାଶ ପୁସ୍ତକ କିଣି ଘରେ ରଖନ୍ତି ? ମଜୁମଦାର ମହାଶୟ ଉତ୍ତର ଦେଲେ – "ଆମ୍ଭେମାନେ ନ କିଣିଲେ କିଏ କିସକାଶ ପୁସ୍ତକ ଛପାଇବ ? ଭାଷାର ଉନ୍ନତି କିପରି ହେବ ? ଆପଣଙ୍କ ଦେଶର ଓଡ଼ିଆମାନେ ଏକଥା ବୁଝନ୍ତି ନାହିଁ, ଏଥିସକାଶ ନୂତନ ୨ ଗ୍ରନ୍ଥ ବାହାରୁ ନାହିଁ, ସୁତରାଂ ଭାଷାର ଉନ୍ନତି ହେଉ ନାହିଁ ।" ମଜୁମଦାର ମହାଶୟଙ୍କ ପ୍ରକୃତ କଥା ଶୁଣି ମୁ ନୀରବ ହେଲି; ମନରେ ବିଚାରିଲି ଆଉ କେତେଦିନେ ଶିକ୍ଷିତ ଉତ୍କଳିମାନେ ଏକଥା ବୁଝିବେ ?

*ଜଣେ ବାହିକା ପାଠକ ।*

*ଏଭରଗ୍ରିନ୍ ଅନୁପମ୍*
*ଦି ମାଲ, ସୋଲନ, ହିମାଚଳ ପ୍ରଦେଶ*

●

# ଛ'ମାଣ ଆଠଗୁଣ୍ଠର ଦୁଇଗୋଟି ଦୁଷ୍ପ୍ରାପ୍ୟ ସମାଲୋଚନା

– *ବିନୀତା ସାହୁ*

ପ୍ରାକ୍‌ଭାଷା ସାହିତ୍ୟ ସମାଲୋଚନାରେ ଦୁଇଗୋଟି ରୀତି ଅନୁସୃତ ହୋଇଥାଏ । ଯଥା: Text and Context. Textual ଧାରାର ଆଲୋଚନା ଆଜି ପ୍ରାୟତଃ ଅଧିକ । ଉଦାହରଣ ସ୍ୱରୂପ- କବିସମ୍ରାଟଙ୍କର 'ଲାବଣ୍ୟବତୀ' ନିଆଯାଉ । ସେଥିରେ ରସପ୍ରୟୋଗ, ଛନ୍ଦପ୍ରୟୋଗ, ଅଳଙ୍କାର ପ୍ରୟୋଗ, ଭାଷା, ସମକାଳୀନ ସମାଜଚିତ୍ର ଇତ୍ୟାଦି ନେଇ ପ୍ରବନ୍ଧ ଲେଖିବା ଆରମ୍ଭ ହୋଇଯାଏ । ଏପରିକି ସେହିପ୍ରକାର ଆଲୋଚନାରୁ ଆର୍ତ୍ତବଲ୍ଲଭ ମହାନ୍ତି ମଧ ବାଦ୍ ପଡ଼ି ନାହାନ୍ତି । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ହେଉଛି Context ଅନୁସାରେ ଧାରା ନିର୍ଣ୍ଣୟ ବା ସମାଲୋଚନା କରିବା । ଏହି ଧାରାର ସମାଲୋଚନାରେ ଆବଶ୍ୟକ ପଡ଼େ ଅଧିକ ଅଧ୍ୟବସାୟ ଓ ଗବେଷଣା ।

ଅଧାପକ କଇଳାଶ ପଟ୍ଟନାୟକଙ୍କ " 'ଛ'ମାଣ ଆଠଗୁଣ୍ଠ' ଓ 'ଉତ୍କଳଦୀପିକା'ର ଦୁଇଟି ପତ୍ର" ନାମରେ ଏକ ପ୍ରବନ୍ଧ 'ଝଙ୍କାର' ୫୫/୧୦ ମାର୍ଚ୍ଚ ୨୦୦୪ରେ ପ୍ରକାଶ ପାଇଥିଲା । ଅଧାପକ ପଟ୍ଟନାୟକ 'ଉତ୍କଳଦୀପିକା'ରୁ ଆଲୋଚ୍ୟ ଦୁଇଟି ଦୁଷ୍ପ୍ରାପ୍ୟ ସମାଲୋଚନା ସଂଗ୍ରହ ପୂର୍ବକ ତାହାର ଆଲୋଚନା କରିବାରେ ଯେଉଁ ପ୍ରୟାସ କରିଛନ୍ତି,ସେଥିରେ ସେ କିଞ୍ଚିତ ସଫଳ ହୋଇଥିଲାପରି ମନେହୁଏ । ଯଦି ସେ ସମାଲୋଚନା ଦୁଇଟି ପ୍ରକାଶ କରିଥାଆନ୍ତେ ତେବେ ସେ ଆହୁରି ସଫଳ ହୋଇପାରିଥାଆନ୍ତେ ।

**ପ୍ରଥମ ସମାଲୋଚନାର ସ୍ୱରୂପ ଓ ତାହାର ବୈଶିଷ୍ଟ୍ୟ–**

ଏହି ସମାଲୋଚନାଟି ଉତ୍କଳଦୀପିକା ୧୮୯୮ ସାଲ ଅକ୍ଟୋବର ୧ ତାରିଖରେ ପ୍ରକାଶ ପାଇଥିଲା । ଏହାର ଶେଷରେ ଲେଖାଅଛି 'BENIADI DIPI' ଏବଂ ତାରିଖ ଅଛି ୨୪/୦୯/୧୮୯୮ । ଏହା ନାଟକ ଶୈଳୀରେ ଲିଖିତ ହୋଇଥିଲେ ମଧ ଏଥିରେ ସମାଲୋଚନାର ସ୍ୱର ସୁସ୍ପଷ୍ଟ । 'ଛ'ମାଣ ଆଠଗୁଣ୍ଠ' ରଚନାର ଅନ୍ତରାଳେ କ'ଣ ଅଛି, ତାହା ଦେଖାଇଦେବା ସମାଲୋଚକ'ର ଉଦ୍ଦେଶ୍ୟ । ଯେତେଦୂର ମନେହୁଏ ଫକୀରମୋହନଙ୍କର କେହି ପରିଚିତ, ଏହି ସମାଲୋଚନା'ର ଲେଖକ । ଏଠାରେ ଗୋଟିଏ ବିଷୟ ଲକ୍ଷ୍ୟ କରାଯାଇପାରେ ସମାଲୋଚନାଟିର ଗୋଟିଏ ଚରିତ୍ର ପଦ୍ମନାଭ । ତାଙ୍କର ସଂଳାପରେ ସେ କହୁଛନ୍ତି- ଅଧାତାଳଗଛ ତମରି ଫ × × × ନ । ଏକଥା ସେ କହୁଛନ୍ତି ଦାଶରଥିଙ୍କ ଉଦ୍ଦେଶ୍ୟରେ । ମନେହୁଏ ଏହି ଦାଶରଥିହିଁ: ଉତ୍କଳଦୀପିକା ୨୭/୦୮/୧୮୯୨ (ଅଧାପକ କଇଳାଶ ପଟ୍ଟନାୟକ ଭୁଲକ୍ରମେ ଏହାକୁ ୧୬/୮/୧୮୯୨ ବୋଲି କହିଛନ୍ତି ।)ରେ ଏକ କବିତା ଲେଖିଛନ୍ତି । ତାହାର ତିନିଗୋଟି ଭାଗ ତୃତୀୟ ଭାଗରେ ସେ ଲେଖିଛନ୍ତି—

"ଅବଧାନ ଅବଧାନ ଫକୀରମୋହନ
"ଆହେ" ତୁମ୍ଭକୁ ଯେ ଛାଡ଼ିଗଲା ଉତ୍କଳ ଭ୍ରମଣ ।
ଅଧାତାଳଗଛ ମେରି ଫକୀରମୋହନ
ଲୁଚିବାର ଲୋକ ନୁହଁ ଲୁଚକିମ୍ପାଧନ ।" *(ଉତ୍କଳଦୀପିକା -୨୭/୦୮/୧୮୯୨, ପୃ ୨୭୭)*

ତେଣୁ ସମାଲୋଚନାଟିରେ ପଦ୍ମନାଭ, ଦାଶରଥିଙ୍କୁ "ଅଧାତାଳଗଛ ତମରି ଫ × × × ନ ବୋଲି କହିଛନ୍ତି ।" ଆମେ ପୂର୍ବରୁ ସୂଚନା ଦେଇଛୁ ଯେ କଇଳାଶ ବାବୁ କିପ୍ରକାର ଭ୍ରମ କରିଅଛନ୍ତି ।

ଏହାର କାରଣ ସମ୍ଭବତଃ ସେ 'ଉତ୍କଳଦୀପିକା'ର ୧୮୯୨ବର୍ଷ ଦେଖିନାହାନ୍ତି, ବରଂ ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କୁ ଅନୁସରଣ କରି ତାରିଖଟି ୧୬/୦୮/୧୮୯୨ ବୋଲି ଲେଖିଛନ୍ତି । କାରଣ ପଣ୍ଡିତ ରଥ ଉପର୍ଯ୍ୟୁକ୍ତ ଉଦ୍ଧୃତିକୁ ଉଦ୍ଧାର କରି ସାରିଲାପରେ ୧୬/୦୮/୧୮୯୨ ବୋଲି ଲେଖିଛନ୍ତି । ସେ ବିଷୟ ଛାଡ଼ନ୍ତୁ । ସମାଲୋଚନାଟି ଢେଙ୍କାନାଳରୁ ଲେଖାଯାଇଛି । କିନ୍ତୁ କଇଳାଶ ବାବୁ ଲେଖିଛନ୍ତି "× × କେହିଜଣେ କେନ୍ଦ୍ରାପଡ଼ା ନିବାସୀ × × ।" ଆଲୋଚକ ତାହାଙ୍କୁ କେନ୍ଦ୍ରାପଡ଼ା ନିବାସୀ ବୋଲି କିପରି ଜାଣିଲେ ତାହା ସେ ଜଣାଇ ନାହାନ୍ତି । ସେଠାରେ କିନ୍ତୁ ସ୍ପଷ୍ଟ 'ଢେଙ୍କାନାଳ' ବୋଲି ଲେଖାଅଛି ।

## ଦ୍ୱିତୀୟ ସମାଲୋଚନା'ର ସ୍ୱରୂପ ଓ ତାହାର ବୈଶିଷ୍ଟ୍ୟ–

ଦ୍ୱିତୀୟ ସମାଲୋଚନାଟି ଦୀପିକା ୨୯/୦୪/୧୮୯୯ରେ ପ୍ରକାଶ ପାଇଥିଲା । କିନ୍ତୁ ପ୍ରତ୍ୟକ୍ଷ ଭାବରେ ଏହା ଏକ ସମାଲୋଚନା ନହେଲେ ମଧ୍ୟ ପରୋକ୍ଷରେ ଏଥିରେ ଛ'ମାଣ ଆଠଗୁଣ୍ଠର ଉତ୍ସ ନିର୍ଣ୍ଣିତ । କଇଳାଶ ବାବୁ ବିଭିନ୍ନ ସୂତ୍ରରୁ ପ୍ରମାଣ ସଂଗ୍ରହପୂର୍ବକ ଦୃଢ଼ ଭାବରେ କହିବାକୁ ଚାହିଁଛନ୍ତି ଯେ ଛ'ମାଣ ଆଠଗୁଣ୍ଠ ଏକ ସତ୍ୟ ଘଟଣା ଉପରେ ଆଧାରିତ । ସେହି ସୂତ୍ରରେ ଦ୍ୱିତୀୟ ସମାଲୋଚନାଟିର ଗୁରୁତ୍ୱ ଯଥେଷ୍ଟ ଅଧିକ । କାରଣ ସମାଲୋଚନାଟିର ଆରମ୍ଭରେ "ଛ'ମାଣ ଆଠଗୁଣ୍ଠ" ସମ୍ପର୍କରେ କିଞ୍ଚିତ ଆଭାଷଦେଇ ଆଲୋଚନାର ଆରମ୍ଭ କରିଛନ୍ତି । ସମାଲୋଚନାଟିକୁ ପାଠକରି ସାରିବା ପରେ ମନରେ ଦୃଢ଼ ଧାରଣା ହୁଏ ଯେ ସମକାଳୀନ କୌଣସି ଘଟଣା ଫକୀରମୋହନଙ୍କୁ ଏହି ଚିରନ୍ତନ ଉପନ୍ୟାସଟି ଲେଖିବା ପାଇଁ ଅନେକ ସାହାଯ୍ୟ କରିଛି । ଏ ସଂପର୍କରେ ଡକ୍ଟର ଗଗନେନ୍ଦ୍ରନାଥ ଦାଶ ସୁବିସ୍ତୃତ ଆଲୋଚନା କରିଛନ୍ତି ତାଙ୍କର "ଛ'ମାଣ ଆଠଗୁଣ୍ଠ" ପରିକଳ୍ପନାର ଉତ୍ସମୁଖ ସନ୍ଧାନରେ" *(ଝଙ୍କାର ୫୬/୧ପୃ. ୩୯-୪୨)* ଏବଂ ସେ ପ୍ରମାଣ କରିଛନ୍ତି ଯେ ସମସାମୟିକ ଘଟଣାଦ୍ୱାରା ପ୍ରଭାବିତ ଫକୀରମୋହନ ସୃଷ୍ଟି କରିଥିଲେ ତାଙ୍କର କାଳଜୟୀ ସୃଷ୍ଟି 'ଛ'ମାଣ ଆଠଗୁଣ୍ଠ' । ତେବେ ଏହି ସମୟରେ ଯେ ସେ ବିଭିନ୍ନ ସାହିତ୍ୟିକଙ୍କ କୃତି ପାଠ କରିନଥିବେ ଏକଥା ମଧ୍ୟ କୁହାଯାଇନପାରେ ।

ପାଠକମାନଙ୍କର ଅବଗତି ନିମନ୍ତେ ଏଠାରେ ଦୁଇଗୋଟି ସମାଲୋଚନା ନିମ୍ନରେ ପ୍ରଦାନ କରାଗଲା ।

### ପ୍ରଥମ ସମାଲୋଚନା

ମହାଶୟ !

ଦାଶରଥି ଓ ପଦ୍ମନାଭଙ୍କର ସାହିତ୍ୟିକ କଥୋପକଥନ ।

ଦାଶ – ଉତ୍କଳ ସାହିତ୍ୟରେ "ଛ'ମାଣ ଆଠଗୁଣ୍ଠ" ପଢ଼ିଚି ?
ପଦ୍ମ – ହଁ ପଢ଼ିଚି । ବଡ଼ ଚମତ୍କାର ହେଇଚି
ଦାଶ – ଲେଖକ କିଏ ଜାଣ ?
ପଦ୍ମ – ନା, ତୁମେ ଜାଣ କି ?
ଦାଶ – ହଁ, ଜାଣେ ଯେ ଅନୁମାନ ପ୍ରମାଣରେ
ପଦ୍ମ – କିଏ କହିଲ ?
ଦାଶ – ସେ ତ' ନାମ ଲୁଚଉଚନ୍ତି, ମୁଁ କିପରି କହିବି
ପଦ୍ମ – ତାଙ୍କ ନାମ ପରା ଧୂର୍ଜଟୀ ?
ଦାଶ – ସେଟା ଗୋଟେ ଡାକୁଣୀ

ପଦ୍ମ - ତାଙ୍କୁଣୀ କାଇଁକି ?
ଦାଶ - ଲୁଚିକରି ସାଧାରଣ ମତ ଜାଣିବାକୁ
ପଦ୍ମ - ପ୍ରବନ୍ଧଟି ଯେତେବେଳେ ଚମତ୍କାର ହେଇଚି ତେତେବେଳେ ପ୍ରକୃତ ଲେଖକଙ୍କୁ ଜାଣି ତାଙ୍କୁ ମୋର ଭକ୍ତି କରିବାକୁ ମନହଉଚି । ଓଡ଼ିଶ୍ୟାରେ ଏପରି ଶ୍ରେଣୀ ଲେଖକ ଅତି ଅଳ୍ପ ।
ଦାଶ - ପ୍ରକୃତ ସତ, ତେବେ କହିବି କିନ୍ତୁ ଠରାଠରିରେ
ପଦ୍ମ - କ'ଣ କହିଲ ?
ଦାଶ - ''ଛ'ମାଣ ଆଠଗୁଣ୍ଠର'' ଅର୍ଥ ''ଛ'ଫୁଟ ଆଠଇଞ୍ଚ''
ପଦ୍ମ - ଛ'ଫୁଟ ଆଠଇଞ୍ଚ କ'ଣ ?
ଦାଶ - ଲେଖକର ଉଚ୍ଚତାର ପରିମାଣ ।
ପଦ୍ମ - ମୁଁ ଫୁଟ ଇଞ୍ଚ କିଛି ବୁଝିପାରୁ ନାଇଁ, ମଫସଲିଆ ଲୋକ, ମତେ ବଳଦିଆ ହିସାବରେ ବୁଝାଇଦିଅ ।
ଦାଶ - ଛ'ଫୁଟ ଆଠଇଞ୍ଚର ମନୁଷ୍ୟଟି କେତେଲମ୍ବ ହେବ ସମୁଜି ପାର ନା ?
ପଦ୍ମ - ନା ।
ଦାଶ - ତାଳଗଛ ଦେଖିଛ ତ !
ପଦ୍ମ - ହଁ, ଦେଖିଚି ।
ଦାଶ - "ଛ ଫୁଟ ଆଠ ଇଞ୍ଚ" "ଠିକ୍ ଅଧ ତାଳଗଛ"
ପଦ୍ମ - ତେବେ ଲେଖକମାନଙ୍କ ମଧ୍ୟରେ ଅଧା ତାଳଗଛ ପରି ଉଚ୍ଚତା କାହାର ହେବ ?
ଦାଶ - ଅଧା ତାଳଗଛ ତମରି –
ପଦ୍ମ - (ଅତି ଆନନ୍ଦରେ କର ତାଳି ଦେଇ) ହଁ ହଁ ଜାଣିଲି ।
ଦାଶ - କହିଲ ?
ପଦ୍ମ - ଅଧା ତାଳଗଛ ତମରି ଫ × × × ନ
ଦାଶ - Character Study କରିଅଛି ସେ ନିପୁଣ ।
ପଦ୍ମ - ସେ ନୋଇଲେ ପୁଣି ଏପରି କିଏ ଲେଖକ ହେବ ? ହେ ଲେଖକ ମହୋଦୟ ! ଶରୀରରେ ଦୀର୍ଘଜୀବୀ ହୋଇଥାଅ । ଆପଣ ଉତ୍କଳ ସାହିତ୍ୟାକାଶରେ ଗୋଟିଏ ଅତି ଉଜ୍ଜ୍ୱଳ ନକ୍ଷତ୍ର । ଆପଣଙ୍କୁ ମୋର ଅଶେଷ ଭକ୍ତିପୂର୍ଣ୍ଣ ନମସ୍କାର ।

BENIADI DIPI - 24 - 9 - 98
(ଉତ୍କଳ ଦୀପିକା-ଅକ୍ଟୋବର-୧ ତାରିଖ-୧୮୯୮)

**ଦ୍ୱିତୀୟ ସମାଲୋଚନା :**

## ତିନିମାଣ ସାତଗୁଣ୍ଠ (ପ୍ରାପ୍ତ)

"ଉତ୍କଳ ସାହିତ୍ୟ"ରେ "ଛ ମାଣ ଆଠ ଗୁଣ୍ଠ" ପାଠକରୁ କରୁ ଆମ୍ଭେମାନେ "ତିନିମାଣ ସାତ ଗୁଣ୍ଠ" ପ୍ରତ୍ୟକ୍ଷ ଦେଖିବୁ ବୋଲି ଭାବି ନଥିଲୁଁ । ଧୁମାତ୍ ଶାସନ ଗୋଟିଏ ସମୃଦ୍ଧିଶାଳୀ ଗ୍ରାମ । ବନମାଳୀ ଶତ୍‌ପଥୀ ସେହି ଗ୍ରାମର ଜଣେ ନୈଷ୍ଠିକ ବ୍ରାହ୍ମଣ । ଆଠ ଅଙ୍କରେ ଅନାବୃଷ୍ଟି ହେତୁରୁ ଯେତେବେଳେ

ଚାରିଆଡ଼େ ହାହାକାର ପଡ଼ିଥିଲା, ଶତ୍‌ପଥୀ ଯଜ୍ଞ କରିବାରୁ ଅଶ୍ରାଏ ମେଘ ବର୍ଷିଗଲା । ତଦ୍ୱାରା କୃଷି ରକ୍ଷା ନ ହେଲେ ହେଁ ଶତ୍‌ପଥିଙ୍କର ଯେ କରାମତ ଅଛି ତାହା ଲୋକେ ବୁଝିପାରିଲେ ।

ଶତ୍‌ପଥିଙ୍କର ଖୁଲ୍ୟତାତ ଦାଶରଥିଙ୍କ ଘର ଶତ୍‌ପଥିଙ୍କ ଘରଠାରୁ ଦଶ ହାତ ହେବ । ଦାଶରଥିଙ୍କର କିଛି ବାହେଲି ଲାଖରାଜ ଜମି ଥିଲା । ତହିଁମଧରୁ କେତେକ ବଗାଏତ, କେତେକ ଖାନାବାରି, ଅବଶିଷ୍ଟ ଶାରଦ ଜମି । ବେଉଷଣ ନ କଲେ ସୁଦ୍ଧା ମାଣ ତିନି ଭରଣ ଫଳେ । ମୋଟରେ ତାହା ତିନି ମାଣ ସାତଗୁଣ୍ଠ ।

ଅନ୍ଦାଜ କୋଡ଼ିଏ ବର୍ଷ ହେବ ଦାଶରଥିଙ୍କର ମୃତ୍ୟୁ ହେଲା । ସେ ଅପୁତ୍ରିକ; ଗୋଟିଏ ମାତ୍ର ଝିଅ ଥିଲା । ବିଧବା ପତ୍ନୀ କୌଶୁଳୀର ଆଉ କେହି ସମ୍ବଳ ନ ଥିଲା ।

ଦାଶରଥିଙ୍କ ମୃତ୍ୟୁର କିଛିଦିନ ଉତ୍ତାରେ ବାହେଲି ଜମି ଦାଖଲ ଖାରଜ ହେବାର ହୁକୁମ ଜାରୀ ହେଲା । ଚାରି ଆଡ଼େ ସାତ ଆଇନ ଗପ । ଶତ୍‌ପଥୀ ଦେଖିଲେ କୌଶଲୀ ଯଦି ଏ ସମୟରେ ଆପଣା ନାମ ଦାଖଲଖାରଜ କରାଇ ନିଏ ତେବେ ଆଏନ୍ଦାକୁ ଆଉ ବାଟ ରହିବ ନାହିଁ । ଗୋଟିଏ ଦୁର୍ବଳମନା, ସହାୟ ବିହୀନା ସ୍ତ୍ରୀ ଲୋକକୁ ବଶୀଭୂତ କରିବା ନିମନ୍ତେ ଯେତେ ଉପାୟ ପ୍ରୟୋଜନ, ଶତ୍‌ପଥୀ ତଦପେକ୍ଷା ଚତୁର୍ଗୁଣ ଉପାୟ ଅବଲମ୍ବନ କଲେ । ସେ ଫାନ୍ଦ ସାମାନ୍ୟ ନୁହେ । କୌଶୁଳୀର ବୁଦ୍ଧି କେତେ ଯେ ସେ ତାହା ଏଡ଼ି ଦିଅନ୍ତା ? ଅବଶେଷରେ କୌଶୁଳୀ ସମ୍ମତି ଅନୁସାରେ ସେ ତିନିମାଣ ସାତଗୁଣ୍ଠ ଶତ୍‌ପଥିଙ୍କ ନାମରେ ଫଏସଲ ହେଲା । ଶତ୍‌ପଥୀ ଅଙ୍ଗୀକାର କଲେ ଯେ ଜମିରେ ଧାନ ଫଳୁ ବା ମରୁଡ଼ି ହେଉ ସେ କୌଶୁଳୀକୁ ବର୍ଷକୁ ବର୍ଷ ଦେଢ଼ ଭରଣ ଧାନ ପଡ଼ି ଦେଉଥିବେ ।

ଶତ୍‌ପଥୀ ଯେ ସେହି ଅଙ୍ଗୀକାର ଆଦୌ ପାଳନ କରି ନାହାନ୍ତି, ଏହା ନୁହେ । କେତେକ ବର୍ଷ ଯାଏ ସେ ଦେଢ଼ ଭରଣ ଲେଖାଏଁ ଧାନ ମାପି ଦେଉଥିଲେ । କୌଶୁଳୀ କେତେ ଥର କହେ ତହିଁରୁ ତୋଳିଏ ଅଗାଡ଼ି ବାହାରେ କିନ୍ତୁ ସେ ଦୋଷ ଶତ୍‌ପଥିଙ୍କର ନୁହେ କୌଶୁଳୀ ଜମିରେ ବହୁତ ଅଗାଡ଼ୀ ଫଳେ । ଆମ୍ବ ପଣସ ପାଚିବା ବେଳେ କୌଶଲୀ ଝିଅ ଗଛ ମୂଳେ ଛିଡ଼ା ହେଲେ ଶତ୍‌ପଥୀ ନାକଟା ଟେକି ଦିଅନ୍ତି । କୌଶୁଳୀ ମୁହଁରେ କିଛି କହି ନ ପାରିଲେ ସୁଦ୍ଧା ମନେ ମନେ ଯାହା ଅନୁଭବ କରେ, ତାହା ଶତ୍‌ପଥୀ ବୁଝିପାରୁ ନ ଥିଲେ ସୁଦ୍ଧା ଆଉ କେହି କେହି ବୁଝିପାରୁଥିଲେ ।

କିଛିଦିନ ଉତ୍ତାରେ କୌଶୁଳୀର ଦୁହିତାର ପରିଣୟ ହେଲା । କ୍ୱାଇଁଟି ଦରିଦ୍ର କିନ୍ତୁ ଗୁଣବାନ୍ । ସେ ପ୍ରକୃତରେ ସୁଶ୍ରୀ ନୁହେଁ, କେହି କେହି କହନ୍ତି ସେ ଛେଳିମୁହାଁ କିନ୍ତୁ କୌଶୁଳୀ ଆଖିରେ ତାହା ଅପେକ୍ଷା ଆଉ କେହି ଅଧିକ ସୁନ୍ଦର ଦିଶୁ ନ ଥିଲେ । ସ୍ଥୁଳତଃ ସେ କୌଶୁଳୀର ଆନ୍ତରିକ ସ୍ନେହର ପାତ୍ର ଥିଲା । ଏବଂ କୌଶୁଳୀ କେତେଥର ଗର୍ବରେ କହେ ଏପରି ଜୁଆଇଁ କେହି ପାଇ ନ ଥିଲା କି ପାଇବ ନାହିଁ ।

ଯେତେ ବେଳେ ଓଡ଼ିଶାରେ ବନ୍ଦୋବସ୍ତ ସଂକ୍ରାନ୍ତ ଜରିବ ଆରମ୍ଭ ହେଲା, କେତେ ଲୋକଙ୍କର ଶ୍ମଶାନ ମଧ୍ୟରୁ, କବର ମଧ୍ୟରୁ ଉତ୍ତରାଧିକାରୀ ବାହାରିଲେ, ଖସଡ଼ା ନ ହେଉଣୁ କେତେ ଲୋକ ଦୁମ୍ ଦାମ୍ କଚଡ଼ା ଖାଇଲେ । କୌଶୁଳୀ ଦିନେ ଗ୍ରାମ୍ୟ ପାର୍ଲିୟାମେଣ୍ଟରୁ ବନ୍ଦୋବସ୍ତ ଗପ ଶୁଣୁ ମନେ ମନେ ଭାବିଲା "ମୋହର ତିନିମାଣ ସାତଗୁଣ୍ଠ ଜମି ଯଦି ମୋହ ନାମରେ ଅମୀନ ଲେଖି ଦିଅନ୍ତା ତେବେ ସେତକ କ୍ୱାଇଁକୁ ଦିଅନ୍ତି । ମୁଁ ମରି ଗଲେ ସେ ମୋ ମୁହଁରେ ଟିକିଏ ନିଆଁ ଦିଅନ୍ତା ମୋହର କାୟା ମୁକ୍ତି ପାଆନ୍ତା ।"

ସେ ଦିନେ ହେଡ ଅମୀନ ପାଖକୁ ଯାଇ ଗୋଟିଏ ବଦର ଦାଏର କରିଦେଲା । ହେଡ୍ ଅମୀନପାଇଁ ଦୁଇଟା ନଡ଼ିଆ ନେଇ ଯାଇଥିଲା । ହେଡ୍ ଅମୀନ ତାକୁ ବୁଝାଇ ଦେଲା ଯେ ତାହା ଜମି ତାହାର ହେବ, ବନମାଳୀ ଶତପଥୀ କେହି ନୁହେ ।

କୌଶୁଲୀ ଘରକୁ ଫେରି ଆସୁ ୨ ବାଟରେ ଭାବିଲା, ସ୍ବାଙ୍ଗ ନାମ ହେଡ ଅମୀନ ପାଖରେ ଲେଖାଇ ଦେଇଥିଲେ ଭଲ ହୋଇଥାନ୍ତା । ସେ ଫେରି ଆସି ଘରେ ପହଞ୍ଚିବା ବେଳକୁ ବଦର କଥା ଶତ୍‌ପଥୀଙ୍କ କର୍ଣ୍ଣଗୋଚର ହୋଇ ସାରିଥିଲା । ଘୋର ବାକ୍ ଯୁଦ୍ଧ ଲାଗିଗଲା । କୌଶୁଲୀ ସେ ଯୁଦ୍ଧରେ ଏରୂପ ନିପୁଣ ବୋଲି ଗ୍ରାମର ସ୍ତ୍ରୀ ଲୋକମାନେ ଆଜି ଯାଏ ଟେର ପାଇ ନ ଥିଲେ । କିନ୍ତୁ ସ୍ବୀକାର କରିବାକୁ ହେବ ଯେ କଟକର ଯେଉଁ ସ୍ତ୍ରୀଲୋକମାନଙ୍କରରଣନୈପୁଣ୍ୟ ଦେଖି ବିଧାତା ତାଙ୍କର ବ୍ୟବସ୍ଥାପକ ସଭାରେ ପ୍ରସ୍ତାବ କରିଥିଲେ ଯେ କଟକରେ ଜନ୍ମ ଗ୍ରହଣ କଲେ ନାରୀମାନେ ଜିହ୍ବା ବିହୀନାହେବେ, କୌଶୁଲୀ ସେମାନଙ୍କ ଅପେକ୍ଷା କୌଣସି ଅଂଶରେ ଅଧିକ ପାରଦର୍ଶୀ ନୁହେଁ ।

ଆଷାଢ଼ ମାସ ରାତି ମେଘ ଅନ୍ଧାର । ଅରଖ ପାରି ମସାଣି ତୋଟାରେ ବନ୍ଦୋବସ୍ତ ହାକିମଙ୍କ ଡେରା ପଡ଼ିଥାଛି । ରାତି ଠିକ୍ ନଅ ଘଡ଼ି ସମୟରେ କୌଶୁଲୀ ବେଓ୍ୟାକୁ ଡାକରା ହେଲା ସେ ଗରହାଜର ଥିବାରୁ ବଦର ଖାରଜ ହେଲା । ଶତ୍‌ପଥୀ ସେଠାରେ ହାଜର ଥିଲେ । ହେଡ୍ ମୋହରିର ତାଙ୍କୁ ବୁଝାଇ ଦେଲା, ମୋକଦ୍ଦମା ତାଙ୍କର ଡିଗ୍ରୀ ହେଲା । ହେଡ୍ ମୋହରିର କାନରେ ସେ କଅଣ ବିପଦ କହିଦେଇ ଖୁସିହୋଇ ଘରକୁ ଚାଲି ଆସିଲେ ।

ତହିଁ ଆରଦିନ ସକାଳୁ ଉଠି ଶତ୍‌ପଥୀ ପିଣ୍ଡା ଉପରେ ବସି ନାଶ ମଲୁଥିଲେ । ମୋକଦ୍ଦମା ଡ଼ିଗ୍ରୀ– ଆଜି ମନ ଭାରୀ ଖୁସି । ବାଟରେ ଯେ ଚାଲି ଯାଉଛି, ଶତ୍‌ପଥୀ ତାକୁ ପାଖକୁ ଡାକି, ନାଶ ଦାନିରୁ ଟିକିଏ ନାଶ ଦେଇ କୌଶୁଲି କଥା, ମକଦ୍ଦମା କଥା ବନ୍ଦୋବସ୍ତ ଡିପୋଟୀ କଥା, ହେଡ ମୋହରୀର କଥା ଯାକ ବୟାନ କରୁଅଛନ୍ତି ।

କୌଶୁଲୀର ହୃଦୟରେ ଯେଉଁ ଅନଳ ଜଳୁଥିଲା, ଶତ୍‌ପଥୀ ତହିଁରେ ଟିକିଏ ଆହୁତି ଦେଲେ କୌଶୁଲିର ମୁହଁରୁ ଯେଉଁ ମହାଭାରତ ବାହାରିଲା, ତାହା ଶତ୍‌ପଥୀ ଆଉ ସହି ପାରିଲେ ନାହିଁ । ଖଣ୍ଡିଏ କଣ୍ଟାବାଉଁସର ବାଡ଼ୀଧରି କୌଶୁଲୀ ମୁଣ୍ଡରେ ସେ ଆଠ ଦଶ ପାହାର ଦେଲେ । ସେହିଠାରେ କୌଶୁଲୀର ଚରମଦଶା ଉପସ୍ଥିତ ହେଲା ।

ପୋଲିସ ସଂବାଦ ପାଇ ତଦାରଖ କରିବାକୁ ଆସିଲେ । ଶତ୍‌ପଥୀ ଚାଲାଣ ହେଲେ । ଡାକ୍ତର ସାହେବ ହଲପ ନେଇ ଯବାନବନ୍ଦି ଦେଲେ ଯେ କୌଶୁଲୀର ମୁଣ୍ଡର ହାଡ଼ ମାଡ଼ ଆଘାତରେ ଖଣ୍ଡ ୨ ହୋଇ ଫାଟି ଯିବାରୁ ତାହାର ମୃତ୍ୟୁ ଘଟିଥିଲା । ଦୌରା ଅଦାଲତରେ ଜଜ ସାହେବ ଶତ୍‌ପଥୀଙ୍କୁ ଯାବଜ୍ଜୀବନ ଦ୍ୱୀପାନ୍ତର ଦଣ୍ଡ ଦେଲେ ଏବଂ "ଧୂର୍ଜଟୀ" ମହାଶୟ ଗୋଟିଏ ଖୁଣ ମୋକଦ୍ଦମାର ଆଶାମୀକୁ କୁମ୍ଭୀରକୁ ଦେବାରୁ କାହାରି ୨ ଯେଉଁ ଅବଶୋଷ ଥିଲା ତାହା ମେଣ୍ଟିଗଲା ।

*ମାର୍ଫତ : ବିନୟ କୁମାର ସାହୁ*
*ଶ୍ରୀରାମ ନଗର (ରୁଚି ଫାକ୍ଟ୍ରି ନିକଟ)*
*ମଧୁପାଟଣା, କଟକ*

●

# ଦୁର୍ଲ୍ଲଭ ପତ୍ରିକା 'ପ୍ରଚାର' ଓ ଫକୀରମୋହନ

*– ବିଶାଖା ସାହୁ*

ବ୍ୟାସକବି ଫକୀରମୋହନ ଏକ ପ୍ରାତଃ ସ୍ମରଣୀୟ ନାମ । ଜାତିପ୍ରୀତି, ସମାଜସଂସ୍କାର, ଦେଶଭକ୍ତି ଓ ସାହିତ୍ୟ ପ୍ରୀତି ତାଙ୍କୁ ଯଥାର୍ଥରେ 'ଯୁଗପ୍ରବର୍ତ୍ତକ ସ୍ରଷ୍ଟା' ପଦରେ ଅଭିଷିକ୍ତ କରିଛି । ପାଠ୍ୟକ୍ରମର ଧାରା ଭିତରେ ରହି ଯେଉଁ ଅଧ୍ୟାପକଗଣ ସମାଲୋଚନା ଲେଖିଛନ୍ତି, ସେମାନଙ୍କର ସୀମାବଦ୍ଧତା ଏହି ଯେ ସେମାନେ ବୃଥାଟାରେ ରାଧାନାଥଙ୍କୁ ସେହି ପଦରେ ରଖିବାପାଇଁ ଚିତ୍କାର କରନ୍ତି । ଖାଲି ସେତିକି ନୁହେଁ ଫକୀରମୋହନଙ୍କୁ ଗୋଟିଏ ସ୍ରଷ୍ଟା ଭାବରେ ଗ୍ରହଣ କରିବାକୁ ମଧ୍ୟ ସେମାନେ କୁଣ୍ଠାବୋଧ କରନ୍ତି । ମନେହୁଏ ଆଜିକୁ ପଚାଶ ବର୍ଷ ଧରି (ସ୍ୱାଧୀନତାପରେ) ଅଧ୍ୟାପକ ଗଣ 'ଯୁଗପ୍ରବର୍ତ୍ତକସ୍ରଷ୍ଟା' ର ସଂଜ୍ଞା ସମ୍ପର୍କରେ ଅବଗତ ନୁହନ୍ତି । ଦ୍ୱିତୀୟରେ, ଆଜିର କେତେକ ଅଧ୍ୟାପକ କିଛି ଗୋଟିଏ ନୂଆ କରିବା ଅଭିପ୍ରାୟରେ ସ୍ରଷ୍ଟାର ଆଲୋକ ପାଖଟିକୁ ତ୍ୟାଗ କରି ଅନ୍ଧକାର ପାଖଟିକୁ ଆଲୋଚନାର ପରିସରକୁ ନେଇ ଆସନ୍ତି । ଏହି ସମ୍ପର୍କରେ ବିଶିଷ୍ଟ ବଙ୍ଗୀୟ ସାହିତ୍ୟକ ଦ୍ୱିଜେନ୍ଦ୍ରଲାଲ ରାୟଙ୍କର ଗୋଟିଏ ସୁନ୍ଦର କବିତା ମନେପଡ଼େ–

*'ନତୁନ କିଛୁ କରୋ ଭାଇ ନତୁନ କିଛୁ କରୋ*
*ଆର୍ କିଛୁ କରେ ନା ପାରେ ବୌ କେ ଧରେ ମାରୋ'*

ଅର୍ଥାତ୍, 'ନୂଆ କିଛି କର, ଯଦି ନୂଆ କିଛି କରି ନପାରୁଛ ତେବେ ବୋହୂକୁ ଧରି ମାର' । ଏହି ପରିପ୍ରେକ୍ଷୀରେ ୧ ୯ ୯୩ ମସିହାରୁ ଫକୀରମୋହନ କେବଳ ଅନ୍ଧାରି ସମାଲୋଚନାର ଶରବ୍ୟ ହୋଇଛନ୍ତି ମାତ୍ର । ଏହା କେବଳ 'ମକ୍ଷିକାଃ ବ୍ରଣ ମିଚ୍ଛନ୍ତି' ରୀତି ବ୍ୟତୀତ ଅନ୍ୟ କିଛି ନୁହେଁ ।

ଫକୀରମୋହନଙ୍କର ସମସ୍ତ ସମାଜସଂସ୍କାର ତଥା ଜାତିପ୍ରୀତିର ନିଦର୍ଶନ ମଧ୍ୟରୁ 'ପତ୍ରିକା ପ୍ରକାଶନ' ଦିଗଟି ଯଥେଷ୍ଟ ସ୍ମରଣୀୟ । 'ବୋଧଦାୟିନୀ ଏବଂ ବାଲେଶ୍ୱର ସମ୍ବାଦବାହିକା' ତାଙ୍କରି ଉଦ୍ୟମର ଫଳପ୍ରସୂ । ଫକୀରମୋହନ ତାଙ୍କର 'ଆତ୍ମଜୀବନୀ'ରେ ଲେଖିଛନ୍ତି–

'ଆମ୍ଭମାନଙ୍କ ପ୍ରେସରୁ ଖଣ୍ଡିଏ ପାକ୍ଷିକ ପତ୍ରିକା ବାହାର କରାଯିବା ସକାଶେ କୋମ୍ପାନିର କାର୍ଯ୍ୟ ନିର୍ବାହିକା ସମିତି ପ୍ରସ୍ତାବ ଏବଂ ସ୍ଥିର କଲେ । ତଦନୁସାରେ 'ବୋଧଦାୟିନୀ' ଏବଂ 'ବାଲେଶ୍ୱର ସମ୍ବାଦବାହିକା' ନାମରେ ଖଣ୍ଡିଏ ପତ୍ରିକା ପ୍ରକାଶିତ ହେଲା । ବୋଧଦାୟିନୀ ଅଂଶ ସାହିତ୍ୟ ବିଷୟକ ଏବଂ ବାଲେଶ୍ୱର ସମ୍ବାଦବାହିକା ଅଂଶ ସମ୍ବାଦ ପ୍ରଚାର ବିଷୟକ ।'

*(ଆତ୍ମଚରିତ – ଫ୍ରେଣ୍ଡସ ପବ୍ଲିଶର୍ସ – ୨୦୦୩-ପୃ ୬୯୬)*

'ବୋଧଦାୟିନୀ'ର ଦୁଷ୍ପ୍ରାପ୍ୟତା ହେତୁ କେତେକ ଗବେଷକ ଏହାର ଅସ୍ତିତ୍ୱ ସମ୍ପର୍କରେ ପ୍ରଶ୍ନବାଚୀ ସୃଷ୍ଟି କରିଥାଆନ୍ତି । 'ବାହିକା'ର ପୃଷ୍ଠା ମଧ୍ୟରେ ମଧ୍ୟ 'ବୋଧଦାୟିନୀ'ର ନାମ ଦେଖିବାକୁ ମିଳି ନାହିଁ । 'ବାହିକା'ର ପୃଷ୍ଠାରେ କିନ୍ତୁ ଦେଖିବାକୁ ମିଳେ 'ପ୍ରଚାର' ନାମକ ଏକ ପତ୍ରିକା'ର ବିଜ୍ଞାପନ । ତାହା ସମ୍ବାଦବାହିକା କାର୍ଯ୍ୟାଳୟରୁ ନିୟମିତ ପ୍ରକାଶ ପାଇବାର ଘୋଷଣା ହିଁ ଜଣାଇ ଦିଏ ଯେ ଏଥିସହିତ ଫକୀରମୋହନ ସମ୍ପୃକ୍ତ । ୧୯୧୪ ସାଲ ବେଳକୁ ଏକସ୍ତରୀ (୭୧) ବର୍ଷ ବୟସ୍କ ଫକୀରମୋହନ

ଏହାର ଦାୟିତ୍ୱରେ ରହିବା କିଛି କମ୍ କଥା ନୁହେଁ । 'ବାହିକା'ରେ 'ପ୍ରଚାର'ର ନାମୋଲ୍ଲେଖ ହୋଇଥିଲେ ମଧ୍ୟ ଓ ତାହାର 'ବିଜ୍ଞାପନ' ମିଳିଥିଲେ ମଧ୍ୟ ତାହା ଆଜି ଦୁଷ୍ପ୍ରାପ୍ୟ । ତାହାର ରୂପ ମଧ୍ୟ ଦେଖିବା ସମ୍ଭବପର ନୁହେଁ ।

୧୯୧୪ ସାଲ ମେ ମାସ ୧୪ ତାରିଖରେ 'ସମ୍ବାଦବାହିକା' ସାମନ୍ତପ୍ରେସର ମ୍ୟାନେଜର ପ୍ରିୟନାଥ ମହାନ୍ତି ଏକ ବିଜ୍ଞାପନ ଦେଇଛନ୍ତି । ସେଥିରେ ଉଲ୍ଲେଖ ଅଛି –

''ଲବ୍ଧ ପ୍ରତିଷ୍ଠ ପ୍ରବୀଣ ସାହିତ୍ୟ ସେବୀ ମହୋଦୟଗଣଙ୍କର ପୃଷ୍ଠ- ପୋଷକତା ଦ୍ୱାରା ପରିଚାଳିତ ସଚିତ୍ର ଓଡ଼ିଆ ମାସିକ ପତ୍ର ପ୍ରଚାର ।

ଅତିଶିଘ୍ର ''ସମ୍ବାଦବାହିକା'' କାର୍ଯ୍ୟାଳୟରୁ ନିୟମିତ ଭାବରେ ପ୍ରକାଶିତ ହେବ । ଉତ୍କଳର ପ୍ରଧାନ ପ୍ରଧାନ ଲେଖକବୃନ୍ଦଙ୍କର ଧର୍ମ୍ମ, ସାହିତ୍ୟ, କବିତା, କ୍ଷୁଦ୍ରଗଳ୍ପ ଏବଂ ପ୍ରତ୍ନତତ୍ତ୍ୱବିଷୟକ ପ୍ରବନ୍ଧ ସାଦରେ ଗୃହୀତ ହେବ । ଲେଖକମାନେ ସ୍ୱ ସ୍ୱ ରଚନାବଳୀ ସ୍ପଷ୍ଟ ଭାବରେ ଲେଖି ନିମ୍ନଲିଖିତ ଠିକଣାକୁ ପ୍ରେରଣ କରିବେ । ଯେଉଁମାନେ ଗ୍ରାହକ ହେବାକୁ ଇଚ୍ଛା କରନ୍ତି, ସେମାନେ ଶିଘ୍ର ପତ୍ର ଲେଖନ୍ତୁ ।

ମୂଲ୍ୟ

ଜନ ସାଧାରଣ – ଟ୨ । ଛାତ୍ର (ମଫସଲ) – ଟ ୧, ବାରଅଣା । ଛାତ୍ର (ସ୍ଥାନୀୟ) – ଟ ୧୲ (ଆଠଅଣା)

ଏହିଠାରେ ପାଠକଗଣ ତିନିଗୋଟି ବିଷୟକୁ ଲକ୍ଷ୍ୟ କରିପାରନ୍ତି –

ପ୍ରଥମତଃ – ଲବ୍ଧ ପ୍ରତିଷ୍ଠ ପ୍ରବୀଣ ସାହିତ୍ୟସେବୀ ମହୋଦୟ ଗଣଙ୍କର ପୃଷ୍ଠପୋଂଷକତା ଦ୍ୱାରା ପରିଚାଳିତ । ଦ୍ୱିତୀୟତଃ – ଉତ୍କଳର ପ୍ରଧାନ ୨ ଲେଖକ ବୃନ୍ଦଙ୍କର ଧର୍ମ, ସାହିତ୍ୟ, କବିତା, କ୍ଷୁଦ୍ରଗଳ୍ପ ଏବଂ ପ୍ରତ୍ନତାତ୍ତ୍ୱିକ ବିଷୟକ ପ୍ରବନ୍ଧ ସାଦରେ ଗୃହୀତ ହେବ । ତୃତୀୟତଃ – ପତ୍ରିକାର ମୂଲ୍ୟ ।

ପ୍ରଥମ ଉକ୍ତିଟି ସ୍ପଷ୍ଟ ପ୍ରମାଣ କରିଦିଏ ଯେ ଫକୀରମୋହନ (ଲବ୍ଧପ୍ରତିଷ୍ଠ ପ୍ରବୀଣ ସାହିତ୍ୟସେବୀ) ଏହାର ପୃଷ୍ଠପୋଷକ ମଧ୍ୟ ରହିଥିଲେ । ଫକୀରମୋହନଙ୍କୁ ଏହି ପରିଣତ ବୟସରେ ସାମନ୍ତପ୍ରେସର ମ୍ୟାନେଜର ପ୍ରିୟନାଥ ମହାନ୍ତି 'ପ୍ରଚାର' ପତ୍ରିକା ସହିତ ସଂଲଗ୍ନ କରାଇ ଦୁଇଗୋଟି ଫାଇଦା ହାସଲ କରିଥିଲେ । ପ୍ରଥମତଃ, ପତ୍ରିକାର 'ପୃଷ୍ଠ ପୋଷକତା ପାଇଁ ଅର୍ଥ ସଂଗ୍ରହ' । ଦ୍ୱିତୀୟତଃ ଜଣେ 'ଲବ୍ଧପ୍ରତିଷ୍ଠ ପ୍ରବୀଣ ସାହିତ୍ୟ ସେବୀ' ଫକୀରମୋହନଙ୍କୁ ସମ୍ମୁଖରେ ରଖି ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରିବା ଓ ଗ୍ରାହକ ସଂଗ୍ରହ କରିବା । ତେବେ ଏଥିରେ ସେ କେତେଦୂର ସଫଳ ହୋଇଥିଲେ, ତାହା କେବଳ ପତ୍ରିକା ମିଳିବା ପରେ ହିଁ ଜଣାପଡ଼ିବ । ସମ୍ବାଦବାହିକା ତା ୦୩.୦୯.୧୯୧୪ରିଖର ପୃଷ୍ଠାରେ ପ୍ରିୟନାଥ ମହାନ୍ତି 'ପ୍ରାପ୍ତ' ଶିରୋନାମାରେ 'ପ୍ରଚାର' ର ପ୍ରଥମ ସଂଖ୍ୟା ସମ୍ପର୍କରେ ନିଜର ମନ୍ତବ୍ୟ ଲେଖିଛନ୍ତି –

''ବାଲେଶ୍ୱରର ନବ ପ୍ରକାଶିତ ମାସିକ ପତ୍ର 'ପ୍ରଚାର' ର ଆଷାଢ଼ ସଂଖ୍ୟା ଯଥା ସମୟରେ ପ୍ରକାଶିତ ହୋଇଥିଲା; କିନ୍ତୁ ତତ୍ ପରବର୍ତ୍ତୀ ସଂଖ୍ୟା ସମୂହ ନାନାପ୍ରକାର ବାଧାବିଘ୍ନବଶତଃ ନିୟମିତ ସମୟରେ ପ୍ରକାଶିତ ହୋଇପାରିନାହିଁ । 'ଶ୍ରେୟାଂସି ବହୁବିଘ୍ନାନି'' ଯାହାହେଉ ପରମପିତା ପରମେଶ୍ୱରଙ୍କ ଅପାର କରୁଣାବଳରୁ ଶିଶୁ ପ୍ରଚାର ନାନା ବାଧାବିଘ୍ନ ଅତିକ୍ରମ କରି ପୁନଶ୍ଚ ନବଶକ୍ତି ସଞ୍ଚୟ କରିବାକୁ ସମର୍ଥ ହୋଇଅଛି । ଏହି ମାସିକ ପତ୍ରର ସୁପରିଚାଳନ ନିମନ୍ତେ କେତେଗୁଡ଼ିଏ ବିଷୟ ପରିବର୍ତ୍ତନ ହୋଇଅଛି । ଶୁଣି ସୁଖୀ ହେଲୁଁ ଯେ, ବର୍ତ୍ତମାନ ବୃଦ୍ଧକବି ଶ୍ରୀଯୁକ୍ତ ଫକୀରମୋହନ ସେନାପତି ଏହାର ସମ୍ପାଦକର ଏବଂ

ସ୍ଥାନୀୟ ଭାତୃସମାଜ ଏହାର ପରିଚାଳନରଭାର ଗ୍ରହଣ କରିଅଛନ୍ତି । ସାହିତ୍ୟ ରଥୀ ଫକୀରମୋହନଙ୍କୁ ସମ୍ପାଦକ ରୂପରେ ପାଇବା ଶିଶୁ ପ୍ରଚାରର ସାମାନ୍ୟ ସୌଭାଗ୍ୟର ବିଷୟ ନୁହେଁ । ପ୍ରଥମ ସଂଖ୍ୟା ପ୍ରକାଶ କରିବା ନିମନ୍ତେ ଯେଉଁ ଶତାଧିକ ଟଙ୍କା ଖରଚ ପଡ଼ିଥିଲା ତାହା ଆମ୍ଭମାନଙ୍କ ଭକ୍ତିଭାଜନ ସ୍ୱନାମଧନ୍ୟ ଜମିଦାର ସାମନ୍ତ ଶ୍ରୀ ରାଧାଚରଣ ଦାସ ପରିଶୋଧ କରିବାକୁ ସ୍ୱୀକୃତ ହୋଇଅଛନ୍ତି । ତାହାଙ୍କର ଏହି ସାହାଯ୍ୟଦାନ ଧନ୍ୟବାଦାର୍ହ । ଶ୍ରାବଣ ଓ ଭାଦ୍ର ସଂଖ୍ୟା ବର୍ତ୍ତମାନ ଯନ୍ତ୍ରସ୍ଥ ।

ଶ୍ରୀ ପ୍ରିୟନାଥ ମହାନ୍ତି

ଏଠାରେ ଗୋଟିଏ ବିଷୟ ଦୃଷ୍ଟି ଦିଆଯାଉ ଶ୍ରୀଯୁକ୍ତ ମହାନ୍ତି ଗୋଟିଏ କଥା ଲେଖିଛନ୍ତି – ''ଏହି ମାସିକ ପତ୍ରର ସୁପରିଚାଳନ ନିମନ୍ତେ କେତେଗୁଡ଼ିଏ ବିଷୟ ପରିବର୍ତ୍ତନ ହୋଇଅଛି ।'' ତାପର ବାକ୍ୟଟି ଦେଖନ୍ତୁ –'' ସୁଖୀ ହେଲୁଁ ଯେ, ବର୍ତ୍ତମାନ ବୃଦ୍ଧକବି ଶ୍ରୀଯୁକ୍ତ ଫକୀରମୋହନ ସେନାପତି ଏହାର ସମ୍ପାଦକର ××× ଭାର ଗ୍ରହଣ କରି ଅଛନ୍ତି ।''

ଫକୀରମୋହନ ପ୍ରଥମେ ଏହାର ସମ୍ପାଦକ ପଦ ଗ୍ରହଣ କରିଥିଲେ ମଧ କେତେକ କାରଣବଶତଃ ପ୍ରିୟନାଥ ମହାନ୍ତି ଏହାର ସମ୍ପାଦକ ପଦ ଗ୍ରହଣ କରିଛନ୍ତି । ଏଥିରୁ ପୂର୍ବବାକ୍ୟ ଅବଶ୍ୟ ପ୍ରମାଣିତ ଯେ, ସୁପରିଚାଳନ ନିମନ୍ତେ କେତେଗୁଡ଼ିଏ ବିଷୟ ପରିବର୍ତ୍ତନ ହୋଇଅଛି । ଏହି ସଂଖ୍ୟାରେ ଚତୁର ଶ୍ରୀମହାନ୍ତି ଆଦୌ ସୂଚନା ଦେଇନାହାନ୍ତି ଯେ ଫକୀରମୋହନଙ୍କ ବଦଳରେ ସେ ନିଜେ ସମ୍ପାଦକ ପଦ ଗ୍ରହଣ କରିବାକୁ ଯାଉଅଛନ୍ତି । ଏହି ସମ୍ବାଦର ୨୭ଦିନ (ସତାଇଶ ଦିନ) ପରେ ଅର୍ଥାତ୍ ସେପ୍ଟେମ୍ବର ମାସ ତିରିଶ ତାରିଖ ୧୯୧୪ ସାଲ ସମ୍ବାଦ ଏହାକୁ ପ୍ରମାଣ କରିଛି । ପାଠକମାନଙ୍କର ଅବଗତି ନିମନ୍ତେ ସମ୍ବାଦଟିକୁ ନିମ୍ନରେ ଦିଆଗଲା –

ପ୍ରଚାର ସମ୍ପାଦକ – ଶ୍ରୀ ପ୍ରିୟନାଥ ମହାନ୍ତି, ଚଳିତ ଆଷାଢ଼ମାସଠାରୁ ବର୍ଷାରମ୍ଭ ହୋଇ ଏହାର ପ୍ରଥମ ସଂଖ୍ୟା ପ୍ରକାଶିତ ହୋଇଅଛି । ଉତ୍କଳର ପ୍ରଧାନ ପ୍ରଧାନ ଲେଖକବୃନ୍ଦଙ୍କର ଧର୍ମ୍ମ, ସାହିତ୍ୟ, କବିତା, କ୍ଷୁଦ୍ରଗଳ୍ପ ଏବଂ ପ୍ରତ୍ନତତ୍ତ୍ୱ ବିଷୟକ ପ୍ରବନ୍ଧ ସାଦରେ ଗୃହୀତ ହେବ । ଲେଖକମାନେ ସ୍ୱ ସ୍ୱ ରଚନାବଳୀ ସ୍ପଷ୍ଟ ଭାବରେ ଲେଖି ନିମ୍ନଲିଖିତ ଠିକଣାକୁ ପ୍ରେରଣ କରିବେ । ଯେଉଁମାନେ ଏହି ମାସିକ ପତ୍ର ନେବାକୁ ଇଚ୍ଛା କରନ୍ତି, ସେମାନେ ଶିଘ୍ର ଅଗ୍ରିମ ମୂଲ୍ୟ ପ୍ରେରଣ କରି ଗ୍ରାହକ ଶ୍ରେଣୀଭୁକ୍ତ ହୁଅନ୍ତୁ ।

ମୂଲ୍ୟ ଜନସାଧାରଣ – ଟ୨ । ଛାତ୍ର (ମଫସଲ) – ୧ ଟଙ୍କା ବାରଅଣା ।

ଛାତ୍ର (ସ୍ଥାନୀୟ) – ଟ ୧ ଟଙ୍କା ଆଠଅଣା ।

ଏହି ସଂଖ୍ୟାରେ ନିମ୍ନଲିଖିତ ବ୍ୟକ୍ତି-ମାନଙ୍କର ପ୍ରବନ୍ଧ ପ୍ରକାଶିତ ହୋଇଅଛି । ଯଥା –

୧ । ନିବେଦନ (ପଦ୍ୟ)-ଶ୍ରୀ ଫକୀରମୋହନ ସେନାପତି ୨ । ଜୟମାଲ୍ୟ (ଗଳ୍ପ)-ଶ୍ରୀ ବସନ୍ତ କୁମାର କର ୩ । ମୁନୀନ୍ଦ୍ର-ମଙ୍ଗଳ (ପଦ୍ୟ)-ଶ୍ରୀ ନନ୍ଦକିଶୋର ବଳ, ବି.ଏ ୪ । ସ୍ୱର୍ଗୀୟ ମଧୁସୂଦନ ମହାପାତ୍ର-ଶ୍ରୀ ଚିନ୍ତାମଣି ମହାନ୍ତି ୫ । ସଙ୍ଗୀତ (ପଦ୍ୟ) ଶ୍ରୀ ଶୈଳେନ୍ଦ୍ରନାଥ ଦତ୍ତ ୬ । ସାୟଂଚିନ୍ତା – ଶ୍ରୀ ଉ ୭ । ମହା ନିମନ୍ତ୍ରଣ (ପଦ୍ୟ)-ଶ୍ରୀ ଫକୀରମୋହନ ସେନାପତି ୮ । କୁଶନାଭ ନଗରୀ-ଶ୍ରୀ ଚନ୍ଦ୍ରଶେଖର ନନ୍ଦ ୯ । ପର୍ବତ (ପଦ୍ୟ)-ଶ୍ରୀ ଚିନ୍ତାମଣି ମହାନ୍ତି ୧୦ । ମାୟା-୰ ଭୋଳାନାଥ ସାମନ୍ତରାୟ ୧୧ । ପ୍ରକୃତି ପ୍ରତି (ପଦ୍ୟ)-ଶ୍ରୀ ଶଶିଶେଖର ମହାନ୍ତି ୧୨ । ବୈଶାଖୀ ସନ୍ଧ୍ୟା-ଶ୍ରୀ – ୧୩ । ଉତ୍କଳଜନନୀ-ଶ୍ରୀ ଅ –

୧୪ । ଭାବିଥିଲି (ପଦ୍ୟ)-ଶ୍ରୀ ସଚ୍ଚିଦାନନ୍ଦ ଦାସ ୧୫ । ରାଜପୁତଜାତି-ଶ୍ରୀ ମୃତ୍ୟୁଞ୍ଜୟ ରଥ କାବ୍ୟତୀର୍ଥ, ବାଣୀଭୂଷଣ ୧୬ । ମୂଲିଆ ପୁଅ (ପଦ୍ୟ)-ଶ୍ରୀ ରୁଦ୍ରନାରାୟଣ ଷଡ଼ଙ୍ଗୀ କାବ୍ୟତୀର୍ଥ ୧୭ । ସିନ୍ଧୁ ସୈକତେ -ଶ୍ରୀ ନ, ଦ,

୧୮ । ସମ୍ପାଦକୀୟ (୧) ପ୍ରାର୍ଥନା (୨) ରୂପମାଧୁରୀ (୩) ଧର୍ମର ଗୋଟିଏ ପ୍ରଧାନ ଅଙ୍ଗ (୪) ଚିତ୍ର ପରିଚୟ

ଚିତ୍ରସୂଚୀ – (୧) ମହାତ୍ମା ପାଗଳବାବା ହରନାଥ ଠାକୁର, (୨) ଶ୍ରୀ ଜଗନ୍ନାଥ ମନ୍ଦିର, (୩) ସର୍ପାଷଦ ଶ୍ରୀ ଶ୍ରୀ ଗୌରାଙ୍ଗ ମହାପ୍ରଭୁଙ୍କର ଭାଗବତ ଶ୍ରବଣ, (୪) ପୁରୀର ହରନାଥ ଅନାଥାଶ୍ରମ – ପ୍ରତିଷ୍ଠା ଉପଲକ୍ଷେ ଭକ୍ତମଣ୍ଡଳୀ ।

ମେନେଜର, 'ପ୍ରଚାର' କାର୍ଯ୍ୟାଳୟ, ବାଲେଶ୍ୱର ।

ପାଠକମାନେ ଦେଖିପାରନ୍ତି ଯେ, ଏଥିରେ ସ୍ପଷ୍ଟ ପ୍ରମାଣିତ ହୋଇଛି ଶ୍ରୀ ପ୍ରିୟନାଥ ମହାନ୍ତି 'ପ୍ରଚାର'ର ସମ୍ପାଦକ ପଦ ଗ୍ରହଣ କରିଛନ୍ତି । ସେ ଯାହାହେଉ ଫକୀରମୋହନଙ୍କ ସହିତ ଯେ 'ପ୍ରଚାର' ନାମକ ଏହି ପତ୍ରିକା ଜଡ଼ିତ ଥିଲା ତାହାହିଁ ବଡ଼ବିଷୟ । 'ପ୍ରଚାର' ପତ୍ରକାକୁ ଦେଖିବାର ସୌଭାଗ୍ୟ ଏ ଲେଖକର ହୋଇନାହିଁ । କେବଳ 'ବାଲେଶ୍ୱର ସମ୍ବାଦବାହିକା'ରୁ ଯାହା ସୂଚନା ମିଳିଥିଲା ତାହାର ଭାବବସ୍ତୁ ଉପରେ ହିଁ ଗଢ଼ିଉଠିଛି ଏହି ପ୍ରବନ୍ଧଟି ।

*ମାର୍ଫତ : ବିନୟ କୁମାର ସାହୁ*
*ଶ୍ରୀରାମ ନଗର (ରୁଚି ଫାକ୍ଟ୍ରି ନିକଟ)*
*ମଧୁପାଟଣା, କଟକ*

●

# ଫକୀରମୋହନଙ୍କ ଏକ ଦୁର୍ଲ୍ଲଭ କବିତା

## ଓଁ ତତ୍‌ସତ୍

ଅୟି ! ଆନନ୍ଦମୟି ସୁଭଗେ କଲ୍ୟାଣି
କଳାହାଣ୍ଡି ରାଜେଶ୍ୱରି–ଭାବି ପାଟରାଣୀ ।
ପଢ଼ିଛ ପୁରାଣେ ମାଗୋ ବିନଷ୍ଟ ସଗରେ
ଉଦ୍ଧାରଣେ ଗଙ୍ଗା ଅବତୀର୍ଣ୍ଣା ଜଗତରେ
ସେହି ସୁରତରଙ୍ଗିଣୀ ବଂଶଜ ନନ୍ଦିନୀ
ନଭୁଲନ୍ତୁ ତୁମ୍ଭେ ମାଗୋ ସୁରତରଙ୍ଗିଣୀ
ଗଙ୍ଗା ଜଗତର ମୁକ୍ତି ଜୀବନଦାୟିକା
ତୁମ୍ଭେ କଳାହାଣ୍ଡି ରାଜ୍ୟେ ପ୍ରକୃତି ପାଳିକା
ସେହି ଗଙ୍ଗାବଂଶଜାତା ତୁମ୍ଭେ ମା କଲ୍ୟାଣୀ
ତବ ଉଦ୍ଦେଶ୍ୟରେଛନ୍ତି ଲକ୍ଷ ଲକ୍ଷ ପ୍ରାଣୀ
ଦେବଦୁର୍ଗ ଲୀଳାମୟି ଆନନ୍ଦ ପ୍ରତିମା –
ବିସ୍ତାରିବେ ସ୍ୱୀୟ ରାଜ୍ୟେ ଗୁଣର ଗାରିମା ।
ଧୈର୍ଯ୍ୟ, ଶାନ୍ତି-କ୍ଷମା-ପ୍ରୀତି ଭକ୍ତି ଗୁଣଚୟ–
ଶିକ୍ଷିଛ ମଣ୍ଡିଛ ମାଗୋ ? ପବିତ୍ର ହୃଦୟ ।
ସମ୍ଭୂତ ସେ ଗୁଣରାଶି ମାନସ ଭୂଷଣ –
ପାଳଗୋ ସେ ଗୁଣଚୟେ ପୁତ୍ର ପ୍ରଜାଗଣ ।
ଦୟାମୟ ପ୍ରଭୁଠାରେ କରି ଉପାସନା –
ନିୟତ ସୁମତି ଶକ୍ତି କରିବେ ପ୍ରାର୍ଥନା ।
ପ୍ରଭୁଙ୍କ କରୁଣାଧାରା ପଡୁ ତବ ଶିରେ –
ପୂଣ୍ୟମୟ ଯଶରାଶି ବିକାଶ ମହିରେ
ଆବାଲ୍ୟ ଶିକ୍ଷିତାଛନ୍ତି ଜନକ ଭବନେ
ଦେଖିବେ ଆଶ୍ରିତ ଜନେ କରୁଣା ନୟନେ
ପ୍ରତିବନ୍ଧ ହେଲେ ମଧ୍ୟ କାର୍ଯ୍ୟ ଶତ ଶତ
କର୍ତ୍ତବ୍ୟ ପାଳନେ ହେବେ ନାହିଁ ବିଚଳିତ ।
ସଂଖ୍ୟାତୀତ ଲୋକ ତବ କୃପା କଟାକ୍ଷରେ –
ଲଭିବେ ସୌଭାଗ୍ୟ ସୁଖଭୋଗ ସହଜରେ
ଈଷତ ଅସାବଧାନେ କେହି ହେଲେ ଲୋକ –
କରନ୍ତୁ କରୁଣା ପ୍ରଭୁ – ନ ଭୁଞ୍ଜିବ ଶୋକ
ପ୍ରକୃତି ବର୍ଗର ସୁଖ ସୌଭାଗ୍ୟ ସାଧନେ –
ବିଚଳିତ ହେବେ ନାହିଁ ସ୍ୱାର୍ଥ ବିସର୍ଜନେ ।
ଉପଦେଶ ଦେଲି – ମନେ ନଭାଳ ଏସନ –
ପ୍ରଭୁଦତ୍ତ ଗୁଣ ବୋଲି କରାଇ ସ୍ମରଣ
ପଢ଼ି(ଡ଼ି)ବ ବୁଢ଼ାଟା କଥା କେବେ ବା ମନରେ
କେତେଖଣ୍ଡ ପୁଥିଥାଉ ମଣିମା ସଙ୍ଗରେ ।

*ଦୟାମୟ ପ୍ରଭୁଙ୍କଠାରେ ଆପଣଙ୍କ ଚିର କଲ୍ୟାଣକାମୀ*
*ଶ୍ରୀ ଫକୀରମୋହନ ସେନାପତି*

*(ସମ୍ବଲପୁର ହିତୈଷିଣୀ–୧୯/୦୨/୧୧୬–ପୃ.୧.)*

# ଅଭିନନ୍ଦନ

'କଳିଙ୍ଗ ଗବେଷଣା ଏକାଡ଼େମୀ'ର ଗବେଷଣା ନିର୍ଦ୍ଦେଶକ ତଥା 'ଫକୀରମୋହନ ପ୍ରକଳ୍ପ'ର ନିର୍ଦ୍ଦେଶକ ପ୍ରଫେସର ଡକ୍ଟର ଗଗନେନ୍ଦ୍ରନାଥ ଦାଶଙ୍କୁ ଭୁବନେଶ୍ୱରସ୍ଥିତ 'କେଦାରନାଥ ଗବେଷଣା ପ୍ରତିଷ୍ଠାନ' ପକ୍ଷରୁ ତା ୨୦।୦୪।୨୦୦୫ ରିଖ **'ଏକାମ୍ର ସମ୍ମାନ'**ରେ ସମ୍ମାନିତ କରାଯାଉଛି । ଏହି ଅବସରରେ 'କଳିଙ୍ଗ ଗବେଷଣା ଏକାଡ଼େମୀ' ପକ୍ଷରୁ ପ୍ରଫେସର ଦାଶଙ୍କୁ ହାର୍ଦ୍ଦିକ ଅଭିନନ୍ଦନ ଜଣାଇବା ସହିତ ତାଙ୍କର ଦୀର୍ଘ ନିରାମୟ ଜୀବନ କାମନା କରୁଛୁ ।

କଳିଙ୍ଗ ଗବେଷଣା ଏକାଡ଼େମୀର

ପରିବାର ବର୍ଗ

# ଅଭିନନ୍ଦନ

**'ଗବେଷଣା ପତ୍ର'**ର ସମ୍ପାଦକ **ସ୍ମରଣ କୁମାର ନାୟକ**ଙ୍କ କାର୍ଯ୍ୟକାଳ ସମ୍ପୂର୍ଣ୍ଣ ହୋଇଯାଇଥିବାରୁ **କୁମାରୀ ବିନୀତା ସାହୁ** ନୂତନ ସମ୍ପାଦିକା ଭାବରେ କାର୍ଯ୍ୟଭାର ଗ୍ରହଣ କରିଛନ୍ତି । ଗବେଷଣା ପତ୍ରର ନୂତନ ସମ୍ପାଦିକାଙ୍କୁ **'କଳିଙ୍ଗ ଗବେଷଣା ଏକାଡ଼େମୀ'** ପକ୍ଷରୁ ହାର୍ଦ୍ଦିକ ଅଭିନନ୍ଦନ । କୁମାରୀ ସାହୁ ୧୯୯୭ ମସିହାରେ ସ୍ନାତକୋତ୍ତର (ଓଡ଼ିଆ) ପାଶ୍ କରିବାପରଠାରୁ ଏଯାବତ୍ କବିବର ରାଧାନାଥ ରାୟଙ୍କ ସମ୍ପର୍କୀତ ବିଶେଷ ଗବେଷଣାରେ ବ୍ରତୀ ଅଛନ୍ତି । କୁମାରୀ ସାହୁଙ୍କ ଦ୍ୱାରା ସମ୍ପାଦିତ ରାଧାନାଥଙ୍କ ସମ୍ପର୍କୀତ ଏକ ପୁସ୍ତକ ଅତି ନିକଟରେ **'କଳିଙ୍ଗ ଗବେଷଣା ଏକାଡ଼େମୀ'** ଆନୁକୂଲ୍ୟରେ ପ୍ରକାଶ ପାଉଛି । କୁମାରୀ ସାହୁଙ୍କୁ ଏ କ୍ଷେତ୍ରରେ ସାହାଯ୍ୟ କରିବା ନିମନ୍ତେ ସହ ସମ୍ପାଦିକା ଭାବରେ ଅନ୍ୟତମ ସଭ୍ୟା **କୁମାରୀ ବିଶାଖା ସାହୁ** ଯୋଗଦାନ କରିଛନ୍ତି । ଏହି ଅବସରରେ ତାଙ୍କୁ ମଧ୍ୟ ଅଭିନନ୍ଦନ ।

**ସ୍ମରଣ କୁମାର ନାୟକ**

ସମ୍ପାଦକ, କଳିଙ୍ଗ ଗବେଷଣା ଏକାଡ଼େମୀ